କବି ବିଦ୍ୟୁତ୍ପ୍ରଭାଙ୍କ

# ଶ୍ରେଷ୍ଠ କବିତା



ସମ୍ପାଦନା

ପ୍ରଫେସର ସଚ୍ଚିଦାନନ୍ଦ ମହାନ୍ତି

# କବି ବିଦ୍ୟୁତ୍‌ପ୍ରଭାଙ୍କ

# ଶ୍ରେଷ୍ଠ କବିତା

*ସମ୍ପାଦନା*

**ଡ: ସଚ୍ଚିଦାନନ୍ଦ ମହାନ୍ତି**

ପ୍ରଫେସର କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ଇଂରାଜୀ ବିଭାଗ,

ହାଇଦ୍ରାବାଦ - ୫୦୦୦୪୬

ଆନ୍ଧ୍ରପ୍ରଦେଶ



କବି ବିଦ୍ୟୁତ୍‌ପ୍ରଭାଙ୍କ ଶ୍ରେଷ୍ଠ କବିତା—ସମ୍ପାଦନା : ଡ: ସଚ୍ଚିଦାନନ୍ଦ ମହାନ୍ତି, ପ୍ରକାଶକ ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଚ୍ଛଦ ଗ୍ରାଫିକ୍ ଆର୍ଟ, କଟକ, ଡି.ଟି.ପି. : ରଶ୍ମି ଡିଜାଇନର୍ସ, କଟକ, ମୁଦ୍ରଣ : ଇନ୍ଦ୍ରାଣୀ ଅଫସେଟ୍, କଟକ ।



KAVI BIDYUTPRABHANKA SHRESHTHA KAVITA — Editor Dr. Sachidananda Mohanty, Publisher : Sahadev Pradhan, *Friends' Publishers,* Binodbehari, Cuttack-753002, Orissa (India), Cover design : Graphic Art, Cuttack, D.T.P. : Rashmi Designers, Cuttack, Printer : Indrani Offset, Cuttack.

First Edition : 2001

Price : Rs. 160

ISBN 81-7401-384-9

# ପ୍ରାକ୍‌କଥନ

ମୋର ପରମାରାଧ୍ୟା ମାତା ସ୍ୱର୍ଗତା କବି ବିଦ୍ୟୁତ୍‌ପ୍ରଭା ଦେବୀଙ୍କ ସମଗ୍ର ରଚନାକୁ ନେଇ ୧୯୮୩ ମସିହାରେ କଟକର ବିଶିଷ୍ଟ ପ୍ରକାଶନ ସଂସ୍ଥା ଫ୍ରେଣ୍ଡସ୍ ପବ୍ଲିଶର୍ସର ସଂଚାଳକ ଶ୍ରୀ ସହଦେବ ପ୍ରଧାନ ତାଙ୍କର ଗ୍ରନ୍ଥାବଳୀ ଦୁଇଖଣ୍ଡରେ ପ୍ରକାଶ କରିଥିଲେ । ଏବେ ତାହା ଦୁଷ୍ପ୍ରାପ୍ୟ । ନୂତନ ପିଢ଼ିର ପାଠକମାନେ ଏବେ କବିଙ୍କର କବିତା ପାଠକରିବାକୁ ଚାହୁଁଛନ୍ତି । ଏହି ଆବଶ୍ୟକତା ପୂରଣ କରିବା ପାଇଁ ଶ୍ରୀଯୁକ୍ତ ସହଦେବ ବାବୁ କବିଙ୍କର ଶ୍ରେଷ୍ଠ କବିତା ସବୁକୁ ପ୍ରକାଶ କରିବାକୁ ଚାହିଁ ତା'ର ସଂକଳନର ଦାୟିତ୍ୱ ମୋତେ ଦେଇଥିଲେ । ପ୍ରାୟ ହଜାରେ ପୃଷ୍ଠାରୁ ଅଧିକ କବିଙ୍କ ବିଭିନ୍ନ ରଚନା ସବୁକୁ ପାଠକରି ମୁଁ ସେଥିରୁ କେତେଗୁଡ଼ିଏ କବିତା ନିର୍ବାଚନ କରିଛି । ଏଗୁଡ଼ିକ କବିଙ୍କ ବିଭିନ୍ନ ସମୟର ଓ ବିଭିନ୍ନ ବିଭାଗର ରଚନାର ଧାରା ଉପରେ ଆଲୋକପାତ କରେ ଓ ମୋର ବିଶ୍ୱାସ ସଂକଳନଟି ପାଠକମାନଙ୍କ ଦ୍ୱାରା ଆଦୃତ ହେବ । ଗ୍ରନ୍ଥାବଳୀର ଅଭାବବୋଧ ପୂରଣ କରିବା ଦିଗରେ ପ୍ରକାଶକଙ୍କ ଆଗ୍ରହ ଓ ପ୍ରଚେଷ୍ଟା ପାଇଁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ସଂକଳଟିରେ କବିତାଗୁଡ଼ିକୁ ଛଅଟି ବିଭାଗରେ ସ୍ଥାନିତ କରାଯାଇଛି, ଯଥା– ପ୍ରାରମ୍ଭ, ଯୌବନ, ଶିଶୁ ସାହିତ୍ୟ, ଆଧ୍ୟାତ୍ମିକ/ଭକ୍ତି କବିତା, ମାଟି ପାଣି ପବନ ଓ ଅନ୍ତିମ । କବିଙ୍କର ଅଧିକାଂଶ କବିତା ପ୍ରଥମ ଦୁଇ ବିଭାଗରେ ରହିଛି । ଯୌବନ ନସରୁଣୁ ତାଙ୍କ ଜୀବନରେ ଯବନିକା ପଡ଼ିଯାଇଥିଲା । ତେଣୁ ପରବର୍ତ୍ତୀ ସମୟର କବିତା ଲେଖାର ସୁଯୋଗ ରହିନଥିଲା । ତଥାପି ତାଙ୍କ ଲେଖାର ବିଶେଷତ୍ୱକୁ ବିଚାର କରି ଅନ୍ୟ କେତୋଟି ବିଭାଗରେ ସଜାଯାଇଛି । 'ମାଟି ପାଣି ପବନ' ତାଙ୍କର ଏକ ନୂତନ ଧରଣର ସରଳ ଦାର୍ଶନିକ ଚିନ୍ତାସମ୍ବଳିତ ରଚନା । ତେଣୁ ସେହି କବିତାରୁ କେତେଗୁଡ଼ିକୁ ଏକ ପୃଥକ୍ ବିଭାଗରେ ରଖାଯାଇଛି ।

ଦଶହରା
ତା ୭.୧୦.୨୦୦୦

ଡ: ସଚ୍ଚିଦାନନ୍ଦ ମହାନ୍ତି
ପ୍ରଫେସର
ଇଂରାଜୀ ବିଭାଗ, କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ
ହାଇଦ୍ରାବାଦ-୪୬
ଆନ୍ଧ୍ରପ୍ରଦେଶ

---

# ଅମ୍ଳାନ କାବ୍ୟପ୍ରତିଭା : ବିଦ୍ୟୁତ୍‌ପ୍ରଭା

ପ୍ରାକ୍-ଆଧୁନିକ ଓଡ଼ିଆ କାବ୍ୟ କବିତା ଆଲୋଚନା ପର୍ଯ୍ୟାୟରେ ଅଗ୍ରଣୀ ଲେଖିକା କୁନ୍ତଳାକୁମାରୀଙ୍କ ପରେ କବି ବିଦ୍ୟୁତ୍‌ପ୍ରଭାଙ୍କର ବିଶେଷ ଅବଦାନ ପରିଲକ୍ଷିତ ହୁଏ । ଆମ ପ୍ରଚଳିତ ସମାଜ ଓ ସଂସ୍କୃତିରେ ଲେଖିକାମାନଙ୍କୁ ସାଧାରଣତଃ 'ନାରୀ କବି' ଆଖ୍ୟା ଦେଇ ଏକ ପୃଥକ୍ ଶ୍ରେଣୀଭୁକ୍ତ କରାଯାଇଥାଏ । ଏକ ସ୍ୱତନ୍ତ୍ର ସାହିତ୍ୟିକ ପରମ୍ପରା ହିସାବରେ ନିଆଯାଏ ନାହିଁ । ଯଥାର୍ଥରେ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସଙ୍କ ମତରେ କେଉଁଠାରେ 'ପୁରୁଷ କବି'ର ଆଖ୍ୟା ଦିଆଯାଇନଥାଏ । ବୋଧହୁଏ ଏହା ଏକ ପୁରୁଷପ୍ରଧାନ ସାମାଜିକ ଚେତନାର ଚିହ୍ନ । ୧୯୯୦ରେ ଯୁକ୍ତରାଷ୍ଟ୍ର ଆମେରିକାର ନ୍ୟୁୟର୍କ ନଗରୀରେ ଅବସ୍ଥାନ କାଳରେ ମୁଁ ଏହାର ସତ୍ୟତା ବିଶେଷଭାବେ ହୃଦୟଙ୍ଗମ କରିଥିଲି । ଏହି ସମୟରେ ଫେମିନିଷ୍ଟ ପ୍ରେସ୍ ଦ୍ୱାରା ପ୍ରକାଶିତ ଭାରତୀୟ ଲେଖିକାମାନଙ୍କର ଏକ ବିଶେଷ ସଂକଳନ ମୋର ଦୃଷ୍ଟିଗୋଚର ହେଲା । ଏହି ବହିଟିର ଓଡ଼ିଆ ବିଭାଗ ଖୁବ୍ ଦୁର୍ବଳ ମନେହେଲା ଏବଂ ତାହାଦ୍ୱାରା ମୋ ମଧରେ ଯଥେଷ୍ଟ କ୍ଷୋଭ ଓ ଗ୍ଲାନି ଜାତ ହେଲା । ଭାରତ ପ୍ରତ୍ୟାବର୍ତ୍ତନ ପରେ କିଛି ବର୍ଷ ଓଡ଼ିଶାର ନାରୀ ପ୍ରତିଭା ସଂପର୍କରେ ଗବେଷଣା କରି ଜାଣିହେଲା ଯେ ସେମାନଙ୍କର ଲେଖାର ପରମ୍ପରା ସ୍ୱତନ୍ତ୍ର । ଓଡ଼ିଶାର ଲେଖିକାମାନଙ୍କ ମଧରେ ବୃନ୍ଦାବତୀ ଦାସୀ, ନିଃଶଙ୍କ ଦାସୀ, ସୁଲୋଚନା ଦେବୀ ଓ ଅନ୍ନପୂର୍ଣ୍ଣା ଦେବୀଙ୍କୁ ପ୍ରଥମ ପର୍ଯ୍ୟାୟର କବିଭାବେ ଶ୍ରେଣୀଭୁକ୍ତ କରାଯାଇ ପାରେ । କହିବା ବାହୁଲ୍ୟ ଯେ ସେସମୟରେ ଉତ୍କଳରେ ନାରୀଶିକ୍ଷାର ଅଗ୍ରଗତି ଯୋଗୁଁ ଏହିପରି ଲେଖାର ବିସ୍ତାର ଘଟିଥିଲା । ନିର୍ମଳାବାଳା ନାୟକ, ନର୍ମଦା କର, ଚନ୍ଦ୍ରମୁଖୀ ଷଡ଼ଙ୍ଗୀ ଆଦି ମହିଳା ରେଭେନ୍‌ସା ବାଳିକା ବିଦ୍ୟାଳୟ ମାଧମରେ ନାରୀଶିକ୍ଷାର ଅଗ୍ରଗତିରେ ଅଗ୍ରଣୀ ଭୂମିକା ନେଇଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ମଧଭାଗ ପର୍ଯ୍ୟନ୍ତ ଉତ୍କଳ-ସାହିତ୍ୟରେ ଲେଖିକାମାନଙ୍କର ବିଶେଷ ପ୍ରଭାବ ପରିଲକ୍ଷିତ ହୁଏ । ରେବା ରାୟ, ନର୍ମଦା କର, ଅବନ୍ତୀ ଦେବୀ, କୁନ୍ତଳାକୁମାରୀ ସାବତ, କୋକିଳା ଦେବୀ, ଶୈଳବାଳା ଦାସ, ଦେବହୂତି ଦେଇ, ନିର୍ମଳା ଦେବୀ, ତୁଳସୀ ଦାସ, ସୀତା ଦେବୀ ଖାଡ଼ଙ୍ଗା, ନନ୍ଦିନୀ ଶତପଥୀ, ହେମଲତା ମାନ୍‌ସିଂ ଓ ବସନ୍ତ ପଟ୍ଟନାୟକ ଆଦି ବିଶିଷ୍ଟ ଲେଖିକାମାନଙ୍କର ପ୍ରତିଭା

ଏକ ନୂତନ ପରମ୍ପରାର ଆଭାସ ଦିଏ । ଏମାନଙ୍କର ରଚନାରେ ଆତ୍ମସର୍ବସ୍ୱ ମନୋଭାବର ବା ଆତ୍ମକୈନ୍ଦ୍ରିକ ମନୋଭାବର ଚିହ୍ନ ନଥିଲା । ପ୍ରଚଳିତ ସମାଜର ନାନାବିଧ ସମସ୍ୟା, ଯଥା – ବାଲ୍ୟ ବିବାହ, ବିଧବା ବିବାହ, ଯୌତୁକ ପ୍ରଥା, ନାରୀ ନିର୍ଯାତନା, ଦରିଦ୍ରତା, ଶ୍ରମିକ ସମସ୍ୟା, ସତ୍ୟାଗ୍ରହ ଓ ସ୍ୱାଧୀନତା ସଂଗ୍ରାମ, ନାରୀ ସ୍ୱାଧୀନତା, ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ଆଦି ବିରୋଧରେ ଶକ୍ତିଶାଳୀ ସାହିତ୍ୟ ସୃଷ୍ଟିକରିଥିଲେ ଏମାନେ । ବିଧବା ବିବାହ ଉପରେ ଆଧାରିତ କୋକିଳା ଦେବୀଙ୍କର 'ବିଳାସିନୀ', କୁନ୍ତଳାକୁମାରୀଙ୍କର 'ଆଧୁନିକ ଧର୍ମ ସମସ୍ୟା' ଓ 'ଏନ୍ତୁଡ଼ିଶାଳାରେ ଅତ୍ୟାଚାର', ଶୈଳବାଳାଙ୍କର 'ଜନସାଧାରଣରେ ନାରୀ ଶିକ୍ଷାର ବିସ୍ତାର', ସରଳା ଦେବୀଙ୍କର 'ନାରୀର ଦାବି' ଏବଂ 'ନାରୀର ଆର୍ଥିକ ସ୍ୱାଧୀନତା', ବିଦ୍ୟୁତ୍‌ପ୍ରଭାଙ୍କର 'କଲିକତା କୁଲି', 'ରିକ୍‌ସାବାଲା', 'ତୁମେ ତ ମଣିଷ ଆମେ ବି ମଣିଷ ଭାଇ', 'କିରାଣି ବାବୁ', 'ମାଟିର ମଣିଷ', ନନ୍ଦିନୀ ଶତପଥୀଙ୍କର 'ଚିମନିର ଡାକ', 'ରକ୍ତ ବାହିନୀ', ଶୁଶୀଳା ଦେବୀଙ୍କର 'ମଣିଷ ସେମାନେ' ଇତ୍ୟାଦି ଲେଖା ଆଧୁନିକ ଲେଖାସବୁଠାରୁ କୌଣସି ଗୁଣରେ କମ୍ କ୍ରାନ୍ତିକାରୀ ନୁହେଁ । ସେହି ଦୃଷ୍ଟିରୁ ପ୍ରାକ୍-ଆଧୁନିକ ସାହିତ୍ୟରେ ନାରୀ ପ୍ରତିଭାର ଅବଦାନ ଓ ବିଦ୍ୟୁତ୍‌ପ୍ରଭାଙ୍କର ଜୀବନୀ ଓ କବିତା ନିଶ୍ଚିତଭାବେ ଆଲୋଚନାଯୋଗ୍ୟ ।

କବି ବିଦ୍ୟୁତ୍‌ପ୍ରଭାଙ୍କର କାବ୍ୟ ଚେତନାର ଉତ୍ତରଣରେ ଯୁଗସଚେତନାର ପ୍ରଭାବ ସ୍ପଷ୍ଟ । ଏ ଉତ୍ତରଣର ବିଭିନ୍ନ ପର୍ଯ୍ୟାୟରେ ସ୍ୱାଧୀନତା ଆନ୍ଦୋଳନ ଓ ଦେଶାତ୍ମବୋଧ—ଯୌବନରେ ସ୍ୱପ୍ନସଞ୍ଚାର—ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱପ୍ନ ତୁଟିବାର ଲକ୍ଷଣ—ସମୟାନୁଯାୟୀ ଆଶା ନିରାଶାର ଜୀବନ ଓ ଜୀବନର ଅନୁଭୂତିରୁ ଦର୍ଶନ ଓ ଆଧ୍ୟାତ୍ମିକତାର ସ୍ୱାଦ—ଏସବୁ ସମସାମୟିକ 'ପୁରୁଷ କବି' ଗଣଙ୍କର କଳାତ୍ମକ ଆତ୍ମପ୍ରତିଷ୍ଠାଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ, ବରଂ ମାତୃସୁଲଭ ଓ ନାରୀସୁଲଭ କୋମଳ ଅନୁଭୂତି ଓ ଆବେଗ ତାଙ୍କ କବିମାନସର ଏକ ବିଶେଷ ଦିଗ । ସେହିପରି ତାଙ୍କର ଦେଶାତ୍ମବୋଧ ଚିନ୍ତାଧାରା କେବଳ ଭାରତବର୍ଷ ପାଇଁ ଉଦ୍ଦିଷ୍ଟ ନୁହେଁ ତାହା ଓଡ଼ିଶା ପାଇଁ ମଧ୍ୟ । ଜାତିପ୍ରୀତି ସହ ଓଡ଼ିଆ ସାହିତ୍ୟ ଓ ସାହିତ୍ୟିକଙ୍କ ପ୍ରତି ସମତ୍ୱବୋଧ, ପ୍ରକୃତି ଜୀବନ, କୋଣାର୍କ ଆଦି ଦେଶର ସ୍ଥାପତ୍ୟ, ପଲ୍ଲୀଚେତନା, ଓଡ଼ିଶାର ପୂଜାପାର୍ବଣ ଆଦିକୁ ନେଇ ତାଙ୍କ କବିତା ପରିପୁଷ୍ଟ । ବିଦ୍ୟୁତ୍‌ପ୍ରଭାଙ୍କର କବିମାନସ ଏକ ବହୁମୁଖୀ ଓଡ଼ିଆ ନାରୀ-ମାନସର ସ୍ୱାକ୍ଷର । ପ୍ରଥମ ପର୍ଯ୍ୟାୟରେ ସ୍ୱାଧୀନତା ସଂଗ୍ରାମୀମାନସ, ଦ୍ୱିତୀୟ ପର୍ଯ୍ୟାୟରେ ସାମାଜିକ ବୈଷମ୍ୟର ଚିନ୍ତନ ଓ

ଆଲୋଡ଼ନ, ତୃତୀୟ ପର୍ଯ୍ୟାୟରେ ବିଷାଦବାଦ ଓ ଜୀବନବୋଧ, ଶେଷ ପର୍ଯ୍ୟାୟରେ ଆଧ୍ୟାତ୍ମିକ ମନନଶୀଳତା ତାଙ୍କ ଜୀବନର ବିଭିନ୍ନ ସମୟର ସାଉଁଟା ଅନୁଭୂତିର ପରିଚାୟକ ।

## (୨)

ଅବିଭକ୍ତ କଟକ ଜିଲ୍ଲାର ଝିଙ୍କଡ଼ି ନାମକ ଏକ ପଲ୍ଲୀ ଗ୍ରାମରେ ଜୁଲାଇ ୧୨, ୧୯୨୬ ସାଲରେ ବିଦ୍ୟୁତ୍‌ପ୍ରଭା ଦେବୀ ଜନ୍ମଗ୍ରହଣ କରିଥିଲେ । ସେ ଗ୍ରାମ ଥିଲା ତାଙ୍କର ମାତୁଳାଳୟ । ସେହି ଜିଲ୍ଲାର ଆଳି ଥାନା ଅନ୍ତର୍ଗତ ନାଟରା ଥିଲା ତାଙ୍କର ପୈତୃକ ଗ୍ରାମ । ତାଙ୍କ ପିତା ଥିଲେ ସୁଲେଖକ ନିମାଇଁ ଚରଣ ଦାସ ଓ ମାତା ଶ୍ରୀମତୀ ରେଖାଦେବୀ । ପିତା ସପରିବାରରେ କଟକଠାରେ ରହୁଥିବାରୁ ବିଦ୍ୟୁତ୍‌ପ୍ରଭା ଗ୍ରାମ ଓ ସହର ଉଭୟ ଠାରେ ଚଳିବାର ସୁଯୋଗ ପାଇଥିଲେ । ଗାଁ ଗହଳିରେ ସେତେବେଳେ ଝିଅମାନେ ସେତେ ଶିକ୍ଷିତ ନଥିଲେ । କିନ୍ତୁ ପିତାଙ୍କ ତତ୍ତ୍ୱାବଧାନରେ ଓ ତାଙ୍କର ନିଜର ଆଗ୍ରହ ଓ ନିଷ୍ଠା ଯୋଗୁଁ ସେ ସମୟର ସଦୁପଯୋଗ କରିଥିଲେ । ତାଙ୍କର ସାହିତ୍ୟକୃତିର ମୂଲ୍ୟାୟନ କରିବା ପାଇଁ ତାଙ୍କ ଜୀବନକୁ ମୁଖ୍ୟତଃ ଚାରିଟି ଭାଗରେ ବିଭକ୍ତ କରାଯାଇ ପାରେ, ଯଥା—ବାଲ୍ୟ, କୈଶୋର, ଯୌବନ ଓ ଅନ୍ତିମ କାଳ । ଆମେ ବିଦ୍ୟୁତ୍‌ପ୍ରଭାଙ୍କର ଜୀବନୀରୁ ଜାଣୁ ଯେ ଅଳ୍ପ ବୟସରୁ ପଢ଼ା ଛାଡ଼ିଥିଲେ ମଧ୍ୟ ସେ ନିଜର କଠିନ ସାଧନା ଫଳରେ ସାହିତ୍ୟଜୀବନର ପରିପୂର୍ଣ୍ଣତା ପାଇଁ ନିଜକୁ ସେତେବେଳୁ ପ୍ରସ୍ତୁତ କରୁଥିଲେ । ସେ କାଳରେ ତାଙ୍କ ଉପରେ ଲେଖକ ପିତାଙ୍କର ଓ ପରିବାରର ପ୍ରଭାବ ପଡ଼ିଥିବ । ବହୁନଦୀ-ପ୍ରବାହିତ ତଳମାଳ ଅଞ୍ଚଳର ଗ୍ରାମ୍ୟ ପରିବେଶ ଓ ପ୍ରକୃତି ତାଙ୍କର ସହଜାତ କବି-ପ୍ରତିଭାକୁ ନିଶ୍ଚୟ ପୁଷ୍ଟ କରିଥିବ । ବିଦ୍ୟୁତ୍‌ପ୍ରଭା ଗ୍ରନ୍ଥାବଳୀରେ ତାଙ୍କର ଜୀବନୀ ସନ୍ନିବେଶିତ ହୋଇଛି । ଏହାଛଡ଼ା ୧୯୯୯ର ଶେଷଭାଗରେ ଅଧ୍ୟାପକ ସୁଧାଂଶୁଶେଖର ରାୟଙ୍କ ଦ୍ୱାରା ରଚିତ ତାଙ୍କର ପରିପୂର୍ଣ୍ଣ ଜୀବନୀ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଛି । ସେଥିରୁ ତାଙ୍କର ଜୀବନୀ ଓ ସାହିତ୍ୟକୃତି ସଂପର୍କରେ ବିଶେଷ ବିବରଣୀ ମିଳେ ।

ବିଦ୍ୟୁତ୍‌ପ୍ରଭା କେବେ ଓ କେଉଁଠାରେ ପ୍ରଥମେ କବିତା ରଚନା କରିଥିଲେ ତା'ର କୌଣସି ସଠିକ୍ ବିବରଣୀ ନଥିଲେ ମଧ୍ୟ ତାଙ୍କର ଜୀବନୀରୁ ଜଣାଯାଏ ଯେ ଗ୍ରାମରେ ଥିଲାବେଳେ ସେ କେତୋଟି ଟିପା ଖାତାରେ ନାନାପ୍ରକାର ବିପରୀତାର୍ଥବୋଧକ ଶବ୍ଦ, ବିଭିନ୍ନ ଲିଙ୍ଗ, ବହୁଅର୍ଥବୋଧକ ଶବ୍ଦ ସବୁକୁ ଲେଖିଥିଲେ । ଦୁଇଟି ଟିପା ଖାତା

ଉପରେ ୧୯୪୪ ଓ ୧୯୪୫ ଲେଖା ସହିତ ଗ୍ରାମର ଠିକଣା ରହିଛି । ତେଣୁ ସେତିକିବେଳକୁ ବା ତା' ପୂର୍ବରୁ ସେ ନିଶ୍ଚୟ ସାହିତ୍ୟ ସାଧନା ଆରମ୍ଭ କରିଥିବେ । ୧୯୪୬, ୧୯୪୭ ଓ ୧୯୪୮ରେ ଲିଖିତ କେତୋଟି ଖାତାରେ କଟକ ଠିକଣା ରହିଛି । ଏଥିରୁ ମନେହୁଏ ସେ ୧୯୪୬ ବେଳକୁ କଟକ ଚାଲିଆସିଥିଲେ । କଟକରେ ତାଙ୍କ ସହପାଠିନୀମାନଙ୍କ ମଧ୍ୟରେ ଡ. ନିରୁପମା ରଥ, ନନ୍ଦିନୀ ଶତପଥୀ ଓ ବସନ୍ତ ପଟ୍ଟନାୟକ ଅନ୍ୟତମା । ତାଙ୍କର ପ୍ରଥମ କବିତା ପୁସ୍ତକ ହେଲା 'ସବିତା' । ଜ୍ୟେଷ୍ଠା ଭଗ୍ନୀ ବାସନ୍ତୀଙ୍କ ସହିତ ମିଳିତ ଉଦ୍ୟମରେ ଏହା ଲିଖିତ । ମୁଖବନ୍ଧ ଲେଖିଥିଲେ ବିଶିଷ୍ଟ ସାହିତ୍ୟିକ ଶଶିଭୂଷଣ ରାୟ । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଦ୍ୱିତୀୟ ମହାଯୁଦ୍ଧ ବେଳେ ବିଶେଷତଃ ୧୯୪୨ର ଭାରତଛାଡ଼ ଡାକରା ବେଳେ ଓଡ଼ିଶାର ପୁରପଲ୍ଲୀରେ ପହଞ୍ଚିଯାଇଥିଲା । ତାହାର ପ୍ରଭାବରୁ ବିଦ୍ୟୁତ୍‌ପ୍ରଭା ମଧ୍ୟ ବାଦ୍ ଯାଇନଥିଲେ । 'ନବଭାରତ' ପତ୍ରିକାର ଫେବ୍ରୁଆରି ୧୯୪୮ ସଂଖ୍ୟାରେ ପ୍ରକାଶିତ କୁମାରୀ ବିଦ୍ୟୁତ୍‌ପ୍ରଭାଙ୍କର 'ବାପୁଜୀ' କବିତାରେ ଏହି ଆନ୍ଦୋଳନର ପ୍ରଭାବ ଲକ୍ଷ୍ୟ କରୁ—

"ଆହା କହିବାକୁ ମାଆ ବାପା ପରି
ନାହିଁ କେ ଆଉ
ଝଞ୍ଜା ସମାନ ମାଡ଼ିଆସେ ଖାଲି
ବିପଦ ଦାଉ ।
ଚିରଦିନ ଲାଗି ସାରା ଏ ଭାରତ
ତିମିରେ ଛାଇ
ଲିଭିଗଲା ଦୀପ ହାଇରେ ହାଇ ।"

ତାଙ୍କର 'ସବିତା' ପୁସ୍ତକରେ ପ୍ରଥମେ 'ଓଡ଼ିଆବୀର' ଓ 'ଜନ୍ମଭୂମି' ଇତ୍ୟାଦି କବିତା ସ୍ଥାନ ପାଇଛି । ଏଥିରୁ ମନେହୁଏ ପ୍ରଥମେ ସେ ଦେଶାତ୍ମବୋଧ ଓ ମାତୃଭୂମିର ଗୌରବ ବିଷୟ ଅନୁଭବ କରି କବିତା ଲେଖିଥିଲେ ।

ଉଦାହରଣ ସ୍ୱରୂପ—

"ଓଡ଼ିଆ ନାମେ ମୁଁ ହୁଏ ଆତ୍ମହରା
ଦିଶଇ ସକଳ କଥା
ପ୍ରତିବାଲି କଣେ ରହିଛି ମୋ ଦେଶ
ବୀରତ୍ୱ ଗୌରବ ଗାଥା ।"

ଏହାପରେ ୧୯୪୭ରେ ବିଦ୍ୟୁତ୍‌ପ୍ରଭାଙ୍କର 'ଉତ୍କଳ-ସାରସ୍ୱତ-ପ୍ରତିଭା' ପୁସ୍ତକ ପ୍ରକାଶିତ ହେଲା । ଏଥିରେ ମଧ୍ୟ ପ୍ରଚ୍ଛନ୍ନଭାବେ ଦେଶାତ୍ମବୋଧର ଆହ୍ୱାନ ରହିଛି । ଓଡ଼ିଶାର କେତେଜଣ ବରେଣ୍ୟ ବ୍ୟକ୍ତିଙ୍କର ଜୀବନୀ ଅଧ୍ୟୟନ କରି କବିତା ମାଧ୍ୟମରେ ସେ ସେମାନଙ୍କର ଯଶଗାନ କରିଛନ୍ତି, ଯଥା—'ସାଧକ କବି ଚିନ୍ତାମଣି', 'ଜ୍ୟୋତିର୍ବିଦ ଚନ୍ଦ୍ରଶେଖର', 'କର୍ମବୀର ଗୌରୀଶଙ୍କର', 'ନାଟ୍ୟକାର ରାମଶଂକର', 'ଦେବାତ୍ମା ପ୍ୟାରୀମୋହନ', 'ଆଦର୍ଶ ରାଜା ସୁତଳଦେବ' ଓ 'ମହାରାଜ ଶ୍ରୀ ରାମଚନ୍ଦ୍ର' ଇତ୍ୟାଦି । ଉତ୍କଳ ଭାରତୀ କୁନ୍ତଳାଙ୍କ ସମ୍ପର୍କରେ ଲିଖିତ କିଛି ପଂକ୍ତି ଏଠାରେ ଉଦ୍ଧାର କରାଯାଇପାରେ—

''ଉତ୍‌କଳ-ଉତ୍ସଙ୍ଗେ ଜନ୍ମି ଶୁଭକ୍ଷଣେ କୁନ୍ତଳା କୁମାରୀ
ଦେଖାଇଲ ନାରୀଶକ୍ତି ଜୀବନରେ ଶୁଭକର୍ମ କରି ।
ରମଣୀ କୁଳ-ଆଦର୍ଶ କବିରାଜ୍ଞୀ ହେ ପ୍ରଗତିଶୀଳା
ଦେବୀ ବୀଣାପାଣିଙ୍କର ଯୋଗ୍ୟସୁତା ସ୍ୱର୍ଗତା କୁନ୍ତଳା ।''

୧୯୪୮ ରୁ ବିଦ୍ୟୁତ୍‌ପ୍ରଭାଙ୍କର କବିତାର ସ୍ୱର ବଦଳିଯାଇଛି । ସେତେବେଳକୁ ସେ ଅନେକ କିଛି ଲେଖିଗଲେଣି । ସେହି ବର୍ଷ ପ୍ରକାଶିତ ପୁସ୍ତକସବୁ ହେଲା 'କନକାଞ୍ଜଳି', 'ମରୀଚିକା' ଓ 'ବିହାୟସୀ' । ଏହି କବିତାସବୁରେ ପ୍ରଥମେ ପ୍ରକୃତି ଓ ପଲ୍ଲୀଜୀବନର ଚିତ୍ରଣ ଦେଖିବାକୁ ମିଳେ । ସେତେବେଳକୁ ତାଙ୍କ ରଚନାରେ ମୋଟାମୋଟି ଛାୟାବାଦର ପ୍ରଭାବ ସ୍ପଷ୍ଟ । ପୁଣି ସେତେବେଳକୁ ସେ ଛନ୍ଦ ବିଷୟରେ ଅଭିଜ୍ଞତା ଲାଭ କରୁଥିଲେ । ଏହି ପରିପେକ୍ଷୀରେ ଅକ୍ଟୋବର ୧୯୪୯ ସଂଖ୍ୟା 'କୁଙ୍କୁମ'ରେ ପ୍ରକାଶିତ ତାଙ୍କର ରଚନା 'ଯୁକ୍ତାକ୍ଷର ଛନ୍ଦ ଓ ଉପଧା ସଂପର୍କରେ ଦୁଇପଦ' ରୁ କିଛି ଅଂଶ ଉଦ୍ଧାର କରାଯାଇ ପାରେ ।

''ଛନ୍ଦ ଦୁଇପ୍ରକାରର—ମିତ୍ରାକ୍ଷର ଓ ଅମିତ୍ରାକ୍ଷର । ମିତ୍ରାକ୍ଷର ପୂର୍ଣ୍ଣମିତ୍ରାକ୍ଷର ହେଲେ ଅଧିକ ସୁଶ୍ରାବ୍ୟ ହୁଏ । ତାହା ଉପଧା ନାମରେ ଅଭିହିତ । କବିତାର ଦୁଇ ପଂକ୍ତିର ଶେଷରେ ଯେଉଁ ବର୍ଣ୍ଣ ଉଚ୍ଚାରିତ ହୁଏ ତାହାର ପୂର୍ବବର୍ତ୍ତୀ ଉଚ୍ଚାରିତ ସ୍ୱରର ମିଳନ ହିଁ ଉପଧା ନାମ ଧାରଣ କରେ ।''*

---

ଛନ୍ଦ ସଂପର୍କରେ ସମ୍ୟକ୍ ଜ୍ଞାନ ଲାଭ ପାଇଁ ପାଠକମାନେ ନିମ୍ନଲିଖିତ ପୁସ୍ତକାବଳୀ ଗବେଷଣା କରିପାରନ୍ତି ।

'ଉପଧା ବିଚାର'—ମିଶ୍ର ଶ୍ରୀ ବ୍ରଜବଂଧୁ ଦେବ ଶର୍ମା । (ସଦସ୍ୟ ବାମଣ୍ଡା)
'ଛନ୍ଦୋଗୁରୁ ରବୀନ୍ଦ୍ରନାଥ' – ପ୍ରବୋଧ ଚନ୍ଦ୍ର ସେନ୍ (ବଂଗଳା)
'ନବ ଜାତକ' – କବି ରାଧାମୋହନ ଗଡ଼ନାୟକ ।

୧୯୯୪ ମସିହାରେ ବିଦ୍ୟୁତ୍‌ପ୍ରଭାଙ୍କର ବିବାହ ହେଲା ଭଦ୍ରକ ଜିଲ୍ଲାର କୁଆଁଶ ମଢ଼ିଆ (ଆଗରପଡ଼ା) ଗ୍ରାମର ଶ୍ରୀ ପଞ୍ଚାନନ ମହାନ୍ତିଙ୍କ ସହିତ । ତା'ପରେ ସେ ବେଶ୍ କିଛି ଦିନ ଗ୍ରାମରେ ରହି ପାରିବାରିକ ଦାୟିତ୍ୱ ବହନ କରିଥିଲେ ଓ ସମସ୍ତଙ୍କର ପ୍ରୀତିଭାଜନା ହୋଇଥିଲେ । ତାହା ମଧ୍ୟରେ କବିତା ଲେଖା ମଧ୍ୟ ଅତୁଟ ରହିଥିଲା । ସେ ଦୁଇ ପୁତ୍ର ଓ ଦୁଇ କନ୍ୟାଙ୍କର ଜନନୀ ହୋଇଥିଲେ । ସେମାନେ ସମସ୍ତେ ଏବେ ସୁପ୍ରତିଷ୍ଠିତ ।

ବିବାହ ପରେ ବିଦ୍ୟୁତ୍‌ପ୍ରଭା ପ୍ରେମକବିତା ରଚନା କରିବାକୁ ଆରମ୍ଭ କରିଛନ୍ତି । ସେ ସମୟରେ କୌଣସି ନାରୀକବି ପ୍ରେମକବିତା ଲେଖି ପ୍ରକାଶ କରୁନଥିଲେ । କିନ୍ତୁ ସେତେବେଳେ ବିଦ୍ୟୁତ୍‌ପ୍ରଭାଙ୍କର ପ୍ରେମକବିତା ଓଡ଼ିଶାର ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ସେ ଲେଖାସବୁକୁ ନେଇ ୧୯୫୧ ଓ ୧୯୫୨ ରେ 'ଝରାଶିଉଳି' ଓ 'ସ୍ୱପ୍ନଦୀପ' ପୁସ୍ତକ ପ୍ରକାଶିତ ହୋଇଥିଲା । ସେପରି ପ୍ରେମକବିତା ଲେଖିବାରେ ବୋଧହୁଏ ବିଦ୍ୟୁତ୍‌ପ୍ରଭା ପ୍ରଥମ । ନାରୀ ଜୀବନର ବିଶେଷକରି ଦାମ୍ପତ୍ୟ ଜୀବନର ଅନ୍ତରଙ୍ଗ ଚିତ୍ର ଏହି ସବୁ କବିତାରେ ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ—

ବାସର ରାତି !
ବାସର ରାତି !
ନୂଆ ଜୀବନର ନିଘନ ସାଥୀ
ଚନ୍ଦନ ଫୁଲ ପ୍ରଦୀପ ହସ୍ତେ
ଅଇଲୁ ପ୍ରଣୟ ସଂଗେ ମାତି
ବାସର
ରାତି । (ଝରାଶିଉଳି)

ସେହିପରି 'ପ୍ରିୟାବାଣୀ' କବିତାର କବି ବିରହ ବେଦନା ପ୍ରକାଶ କରିଛନ୍ତି—

''ଭୋଅର ସପନେ ଚମକ ଲାଗିଲା
ତୁମେ ଯିବ ପରବାସ
ମଉଳି ପଡ଼ିଲା ପାଂଶୁ ଅଧରରେ
ସହସା କରୁଣ ହାସ
ନୟନରୁ ଝରି ଅଶ୍ରୁର ଧାର
କପାଳେ ରଚିଲା କଜ୍ଜ୍ୱଳ ଗାର

କହିଲ ତୁରିତେ          ବିଦାୟ ଦିଅ ଗୋ
ନାହିଁ ଆଉ ଅବକାଶ !''

X          X          X

''ତୁମେ ସିନା ଗଲ          ସ୍ମୃତିକୁ କେବଳ
କରି ହେ ଗଣ୍ଠିଧନ
ପୋଷା ହରିଣୀଟି          ପରି ତୁମ ପଛେ
ଗୋଡ଼ାଇଲା ମୋର ମନ ।''

ଏହି ସମସ୍ତ କବିତାର ପଟ୍ଟଭୂମି ସମ୍ପର୍କରେ କିଞ୍ଚିତ୍ ଆଭାସ ଦେଇଛନ୍ତି କବି ବିଦ୍ୟୁତ୍‌ପ୍ରଭା ନିଜେ ତାଙ୍କର 'ଝରାଶିଉଳି' ପୁସ୍ତକର ମୁଖବନ୍ଧରେ–

''ପ୍ରଥମ ଯୌବନର ଚୋରା ମଳୟରେ ମନର ନିଭୃତ ଉଦ୍ୟାନରେ ଯେଉଁ କଢ଼ିଗୁଡ଼ିକ ଦିନେ ହସିବାର ଆକାଙ୍କ୍ଷା ଘେନି କଳକୁହୁ ମୁଖରିତ ବସନ୍ତର ସ୍ୱପ୍ନ ଦେଖୁଥିଲା–ସେ ସ୍ୱପ୍ନ ଆଜିର ଏଇ ପ୍ରଣୟ-ରୋମାଞ୍ଚ ଜୀବନରେ ସତ୍ୟ ହୋଇଛି । କାଳର ଧର୍ମାନୁଯାୟୀ ଏଇଗୁଡ଼ିକ ଯେ ଦିନେ ନିର୍ମମ ବୈଶାଖର ଆଗ୍ନେୟ ନିଶ୍ୱାସରେ ବୃନ୍ତବିଲୁଣ୍ଠିତ ହୋଇ ଧରଣୀର ଏଇ ରୁକ୍ଷ ଧୂଳିଶେଯରେ ଝରି ପଡ଼ିବେ, ଏହାର ସତ୍ୟତା ଯେ ନିତାନ୍ତ ଅଳ୍ପ, ଏପରି ନୁହେଁ ।

ହତଶିରୀ ବଣଭୂଇଁ ପଛେ ଦାବଦଗ୍ଧ ହେଉ, କ୍ଳାନ୍ତ କଣ୍ଠ କୋକିଳଦମ୍ପତିର ଲଳିତ କାକଳି ପଛେ ଚିରଦିନ ପାଇଁ ନିସ୍ପନ୍ଦ ନୀରବତା ଭିତରେ ହଜିଯାଉ, ଶୋଚନା ନାହିଁ–ମଧୁକ୍ଷରା ସୁରଭିତ ପୁଷ୍ପସ୍ତବକରାଜି ବରଂ ସବୁଦିନ ପାଇଁ ଝରିଯାଉ, ଦୁଃଖ ନାହିଁ–ମାତ୍ର ରହୁ ତା'ର ଉଜ୍ଜ୍ୱଳ ସ୍ମୃତି, ତା'ର କାନ୍ତ କୋମଳ ଆଲେଖ୍ୟ ରାଜି ଏଇ ମନ ଭିତରେ–ଅନ୍ତରର ନିଭୃତତମ ପ୍ରଦେଶରେ । ହୃଦୟର ପୂଜାବେଦୀ ଉପରେ ଯୌବନର ସେହି ପ୍ରେମଚନ୍ଦନାକ୍ତ ସ୍ମୃତି ସମୂହ ବସନ୍ତର ଶୁଭ୍ର ପଦ୍ମପରି ଆଜୀବନ ଯେ ଅମ୍ଳାନ ରହିବ–ଏହା ମୋର ବିଶ୍ୱାସ ।''

୧୯୫୨ ମସିହା ପରେ ବିଦ୍ୟୁତ୍‌ପ୍ରଭା ସନ୍ତାନର ଜନନୀ ହେଲା ପରେ ଶିଶୁସାହିତ୍ୟ ରଚନା କରିବା ଆରମ୍ଭ କରିଥିଲେ । ସେଥିମଧ୍ୟରୁ କେତେଗୁଡ଼ିଏ ୧୯୫୫ରେ 'ଯାହାକୁ ଯିଏ' ନାମକ ପୁସ୍ତକରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ଭାରତ ସରକାରଙ୍କ ଦ୍ୱାରା ଶ୍ରେଷ୍ଠ ଶିଶୁସାହିତ୍ୟ ହିସାବରେ ପୁରସ୍କୃତ ହୋଇଥିଲା । ସାବଲୀଳ ଭାଷାରେ, ଛନ୍ଦ ମାଧ୍ୟମରେ ରଚିତ କବିତାଗୁଡ଼ିକ ବେଶ୍ ମନୋମୁଗ୍ଧକର । ଶବ୍ଦ ସହିତ ଉପଯୁକ୍ତ ଅର୍ଥ ମଧ୍ୟ କବିତାଗୁଡ଼ିକରେ ଅନ୍ତର୍ନିହିତ ।

ଉଦାହରଣ ସ୍ୱରୂପ–

"କିଇସ କଥା । ବେଙ୍ଗୁଲି କଥା
କଥା ମାଡ଼ିଯାଏ ମେଲେଇ ଲତା ।

ନୀତି କଥା ଏକା କଥାର ସାର
ଆଉ ସବୁ କଥା ପାଣିର ଗାର ।"

(କଥାର ନଥା)

ଏହାପରେ ତାଙ୍କର କେତେଖଣ୍ଡି ଶିଶୁ ସାହିତ୍ୟ ପ୍ରକାଶିତ ହୋଇଛି । ୧୯୬୦ରେ 'ମୋ ପେଁକାଳୀ ବଢ଼େଇ ଦେ' ଓ 'ଗଛପତର', ୧୯୬୧ରେ 'ମୁଁ କେମିତି ପିଲା', ୧୯୬୩ରେ 'କାହିଁକି ତୁମେ' ଓ ୧୯୬୬ ରେ 'ପଢୁଆ ହସିହସି ଗଡୁଥା' । ଶିଶୁମାନଙ୍କର ସର୍ବାଙ୍ଗୀଣ ବିକାଶ, ଯଥା–ଶାରୀରିକ, ମାନସିକ ଓ ଆତ୍ମିକ, ସେ ଦିଗରେ ଯେ ମା'ର ବିଶେଷ ଭୂମିକା ରହିଛି ଏହା ଏହିସବୁ କବିତାର ମର୍ମ ।

୧୯୬୬ ବେଳକୁ ଅସୁସ୍ଥତା ଯୋଗୁ ବିଦ୍ୟୁତ୍‌ପ୍ରଭାଙ୍କର ସ୍ୱାସ୍ଥ୍ୟହାନି ଘଟିଲା ଓ ଶେଷ ଜୀବନ ପର୍ଯ୍ୟନ୍ତ ସେ ସେଥିଲାଗି କଷ୍ଟ ଭୋଗିଲେ । ସେତିକିବେଳେ ଶ୍ରୀଅରବିନ୍ଦ ଆଶ୍ରମ ସହିତ ତାଙ୍କର ଘନିଷ୍ଠ ସଂପର୍କ ପ୍ରତିଷ୍ଠା ହୋଇଥିଲା ଓ ସେ ଶ୍ରୀଅରବିନ୍ଦଙ୍କ ଅତିମାନସ ଯୋଗପଥ ଗ୍ରହଣ କରିଥିଲେ । ତେଣୁ ପ୍ରଥମାବସ୍ଥାରେ ସଂସାର ପ୍ରତି କିଛିଟା ଉଦାସୀନତା ସ୍ୱାଭାବିକ ଥିଲା, ତାହା ମଧ୍ୟ ସାହିତ୍ୟସାଧନାରେ କିଛିମାତ୍ରାରେ ପ୍ରଭାବ ପକାଇଥିଲା । କିନ୍ତୁ ଯଥାର୍ଥରେ ସେ ଏକ ସଙ୍ଗେ ଦୁଇ ଧାରରେ ଜୀବନ ଯାପନ କରୁଥିଲେ । ସମାଜ, ଘର, ବଂଧୁ, ସ୍ୱାମୀ, ପୁତ୍ର, କନ୍ୟା ସମସ୍ତଙ୍କୁ ଆପ୍ରାଣ ଭଲ ପାଉଥିଲେ । ପୁଣି ବେଳେ ବେଳେ ସେସବୁ ଭିତରେ ଥାଇ ମଧ୍ୟ ତାଙ୍କର ମନ ଅନ୍ୟ ଏକ ଦୁନିଆ ସହ ଯୋଗାଯୋଗ ସ୍ଥାପନ କରୁଥିଲା । ସ୍ୱାଭାବିକ ଭାବରେ ଏସବୁ କିଛି ନୁହେଁ, କେହି ବି ନୁହେଁ ଏମିତି ସବୁ ଅନୁଭବ କରୁଥିଲେ । ତା ସତ୍ତ୍ୱେ ସାହିତ୍ୟ ସାଧନା ଅବ୍ୟାହତ ରଖି ଅନେକଗୁଡ଼ିଏ ଆଧ୍ୟାତ୍ମିକ ଓ ଭକ୍ତିକବିତା ରଚନା କରିଥିଲେ । ସେସବୁ ପୁସ୍ତକ ଆକାରରେ ମଧ୍ୟ ପ୍ରକାଶିତ ହୋଇଥିଲା । ସେଗୁଡ଼ିକ ହେଲା, 'ପୁଷ୍ପାଞ୍ଜଳି', 'ଜ୍ୟୋତିଶିଖା', 'ସୂର୍ଯ୍ୟମୁଖୀ' ଓ 'ମାଟି ପାଣି ପବନ', ପାରିବାରିକ କ୍ଷେତ୍ରରେ ଏକ ଦିବ୍ୟଜୀବନର କଳ୍ପନା ସେ କରିଥିଲେ 'ବିବାହ' ନାଟକ ମାଧ୍ୟମରେ । ଏହା ବୟାଳିଶ ମଉଜା, ଆଗର ପଡ଼ା, ଭବାନୀପାଟଣା ଆଦି ସ୍ଥାନରେ ଶ୍ରୀଅରବିନ୍ଦ ଯୁବଛାତ୍ର ଶିବିରରେ ବାଳକ/ବାଳିକାମାନଙ୍କ ଦ୍ୱାରା ଅଭିନୀତ ହୋଇଥିଲା ।

ାହି ସମୟରେ ଲିଖିତ ବିଦ୍ୟୁତ୍‌ପ୍ରଭାଙ୍କର ଅନେକ ଗୁଡ଼ିଏ କବିତା ଭକ୍ତିଭାବର ପରିଚୟ ୀଏ—

'ସମୁଦ୍ର ଓ ସମାଧି'

''ଏକପାଶେ ଟାଣେ ମହାସିନ୍ଧୁର ଉନ୍ମନା ନୀଳଜଳ
ଡାକେ ଆର ପାଖେ ଧିଆନ-ମଗ୍ନ ଶାନ୍ତ ସମାଧି ତଳ
ଏକସାଥେ ଶୁଭେ ଦୁଇ ମୁଖୁ ଡାକ
କାରେ ଏଡ଼ି ଦେଇ ଯିବି କାହାପାଖେ
ପ୍ରାଣର ଦ୍ୱନ୍ଦ୍ୱ ପ୍ରେମର ଜୁଆରେ ହୋଇଉଠେ ଉଚ୍ଛଳ
ଏକଧାରେ ଡାକେ ଶାନ୍ତ ସମାଧି ସିନ୍ଧୁର ନୀଳ ଜଳ ।''

(ଜ୍ୟୋତିଶିଖା)

'ପୁଷ୍ପାଞ୍ଜଳି' ପୁସ୍ତକରେ ସେହିପରି ଅନେକ ଗୁଡ଼ିଏ କବିତା ସମର୍ପଣ ମନୋଭାବ ନେଇ ରଚିତ—

''କନକୋଜ୍ଜ୍ୱଳ
ଆଲୋକ ବରଣୀ
ଆଲୋକ ଦିଅ ଗୋ
ଆଲୋକ ଦିଅ —
ଆଲୋକ ରାଇଜେ ଆଲୋକିତ ପଥେ
ରୂପାନ୍ତରିତ କରିନିଅ ମତେ
ଏତେ ଦିନେ ଯେବେ ପାଷାଣ ହୃଦୟ
ସରସ କରିଛ
ପରମା ପ୍ରିୟ
ଆଲୋକ ବରଣୀ ଆଲୋକର ରାଣୀ
ଆଲୋକ ରାଇଜେ
ନିଅ ଗୋ ନିଅ ।''

ସେହିପରି ''ସୂର୍ଯ୍ୟମୁଖୀ'' ପୁସ୍ତକରେ 'ଜନ୍ମଶତକ' କବିତା କବିଙ୍କର ଆଧ୍ୟାତ୍ମିକ ଚିନ୍ତାର ପରିଚୟ ଦିଏ —

''ତୁମେ ଅଖିଳ ବନ୍ଦନୀୟ
ଗୁରୁ ଶ୍ରୀଅରବିନ୍ଦ ଜୟ

ପ୍ରଭୁ ଅତିମାନସର ଜ୍ୟୋତି ଭାସ୍ୱର
ପ୍ରେମର ପ୍ରଣତି ନିଅ ।
ଦିବ୍ୟ ଜୀବନ ଲାଗି
ଅବଚେତନାର ରୁଦ୍ଧ ଦୁଆର
ସଜୋରେ ଦେଇଛ ଭାଙ୍ଗି ।
ଅଶେଷ ଯାତନା ସହି
ତୁମେ ନିଃଶେଷ କରି ନରକର ଲୀଳା
ସରଗ କଲ ଏ ମହୀ ।
ପ୍ରତି ଅନ୍ତର ତଳୁ କୃତଜ୍ଞତାର
ଅଶେଷ ପ୍ରଣାମ ନିଅ ।
ତୁମେ ନିଖିଳ ବନ୍ଦନୀୟ... ''

୧୯୭୫ ମସିହାରେ ପଣ୍ଡିଚେରୀଠାରେ ଅସୁସ୍ଥ ହୋଇ ବିଦ୍ୟୁତ୍‌ପ୍ରଭା ଭୁବନେଶ୍ୱର ଫେରିଆସିଥିଲେ । ଏହା ମଧ୍ୟରେ ସେ ଓଡ଼ିଶାର ଅନେକ ଗୁଡ଼ିଏ ଶ୍ରୀଅରବିନ୍ଦ ଶିକ୍ଷାକେନ୍ଦ୍ର ଓ ପାଠଚକ୍ର ସହିତ ସଂପୃକ୍ତ ହୋଇସାରିଥିଲେ । କିନ୍ତୁ ଅସୁସ୍ଥତା ଯୋଗୁଁ ସେହି କେନ୍ଦ୍ରସବୁର କାର୍ଯ୍ୟକ୍ରମରେ ଯୋଗ ଦେବା ଆଉ ତାଙ୍କ ପକ୍ଷେ ସମ୍ଭବ ହେଲାନାହିଁ । ୧୯୭୭ ଜାନୁଆରି ୨୮ ତାରିଖରେ ଦୀର୍ଘଦିନ ଅସୁସ୍ଥତା ପରେ ତାଙ୍କର ଅକାଳ ମୃତ୍ୟୁ ଘଟିଲା ।

ଆଷାଢ଼ ମାସର ଏକ ବର୍ଷାମୁଖର ରାତ୍ରିରେ ବିଦ୍ୟୁତ୍‌ପ୍ରଭାଙ୍କର ଜନ୍ମ । ତାଙ୍କର ୫୧ ବର୍ଷ ବୟସ ମଧ୍ୟରେ ସେ ବାସ୍ତବିକ ଏକ ବିଦ୍ୟୁତ୍ ପରି ଜୀବନ ଯାପନ କରିଥିଲେ । ସ୍ୱଳ୍ପ ଜୀବନ କାଳର ସେ ଯଥାର୍ଥ ଉପଯୋଗ କରିଛନ୍ତି । ଅନେକ କିଛି ଲେଖିଛନ୍ତି ଓ ପ୍ରାୟ ସବୁକିଛି ପ୍ରକାଶିତ ହୋଇଛି ମଧ୍ୟ । ସଫଳ ପାରିବାରିକ ଜୀବନ ଯାପନ କରିବା ସହିତ ନିଜକୁ ଓ ପରିବାରକୁ ଆଧ୍ୟାତ୍ମିକ ମାର୍ଗରେ ପରିଚାଳିତ କରିଛନ୍ତି । ମୋଟ ଉପରେ ତାଙ୍କ ପାଇଁ ଜୀବନଟି ଥିଲା ଏକ ଝଡ଼ ଓ ସଂଗ୍ରାମର କ୍ଷେତ୍ର । ଏହି ଅନୁଭୂତି ଆମେ ତାଙ୍କର ଅନେକ କବିତାରେ ଦେଖୁ । ଉଦାହରଣ ସ୍ୱରୂପ 'ଜୀବନ' ଝଡ଼' କବିତାରୁ କିଛି–

''ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବହେ
ଆହୁଲାଟି ଗଲେ ଭାସି
ମନେ ତ ଦକା ନଥାଏ

ଝଡ଼ ପରେ ସରି ଝଡ଼
ଛାତି ହୋଇଲାଣି ଦଢ଼
ଲୁଆରିଆ ସୁଏ ପଡ଼ି
ପାହାଡ଼େ ଯେ ଧକ୍କା ଖାଏ
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବହେ ।

X X X

ଆଲୋକ ପିଆସୀ ମୁହିଁ
ଆଲୋକ ଜୀବନ ଚାହେଁ
ଝଡ଼ର ତରଣୀ ମୁଁ ଗୋ
ଝଡ଼େ ମୋ ଜୀବନ ବାହେ ।''

କେବଳ ନବମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ମଧ୍ୟ ବିଦ୍ୟୁତ୍‌ପ୍ରଭା ନିଜର ଅସାଧାରଣ ପ୍ରତିଭା ଓ ଉଦ୍ୟମ ଯୋଗୁଁ ଏକ ସଫଳ କବି ହୋଇପାରିଲେ । ବିଶିଷ୍ଟ ଲେଖକ ଓ ସଂକଳକ ପିତା ନିମାଇଁ ଚରଣ ଦାସ ତାଙ୍କୁ ଏ ଦିଗରେ ଉତ୍ସାହିତ କରୁଥିଲେ । ସେତେବେଳର ଅନେକ ଖ୍ୟାତନାମା ଲେଖକ ତାଙ୍କ ଘରକୁ ଆସୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ କୃଷ୍ଣଚନ୍ଦ୍ର କର, ଡ: ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ଓ କୁଞ୍ଜବିହାରୀ ଦାଶ ଇତ୍ୟାଦି । ଅନେକ ଲେଖକ ମଧ୍ୟ ତାଙ୍କ ପୁସ୍ତକର ମୁଖବନ୍ଧ ଲେଖିଛନ୍ତି । ଯଦିଓ ନିଜ ଅଧ୍ୟବସାୟରେ ପରିବାର ସୀମାରେ ରହି ସେ କିଛି ସଂସ୍କୃତ, ବଙ୍ଗଳା ଓ ଇଂରାଜୀ ଶିକ୍ଷା ଲାଭ କରିଥିଲେ ତଥାପି ଉଚ୍ଚଶିକ୍ଷାରୁ ବଞ୍ଚିତା ହୋଇ ବିଦ୍ୟୁତ୍‌ପ୍ରଭା ନିଶ୍ଚିତ ଭାବେ ଅନେକ କିଛି ସାହିତ୍ୟିକ ଓ ସାଂସ୍କୃତିକ ପ୍ରଭାବରୁ ବଞ୍ଚିତା ହେଲେ । ଏହି ପରିପେକ୍ଷୀରେ ଡ: ମାୟାଧର ମାନସିଂହଙ୍କର 'ବିଦ୍ୟୁତ୍‌ପ୍ରଭା' ଶୀର୍ଷକ ଶେଷ ଲେଖାରେ କିଛି ଅଂଶ ଉଦ୍ଧାର କରାଯାଇପାରେ—

''ବିଦ୍ୟୁତ୍‌ପ୍ରଭା ଘରଣୀ ହେଲେ ଏବଂ ପୁତ୍ର କନ୍ୟା ସତ୍ତ୍ୱେ କବିତା ବି ଲେଖିଚାଲିଲେ । କିନ୍ତୁ ଦୂରପ୍ରସାରୀ ଅଭିଜ୍ଞତା ଅଭାବରୁ ସହଜାତ ଘରୋଇ ଶକ୍ତି ତାଙ୍କୁ ଯେଉଁ ସ୍ତରରେ ଆଣି ପହଞ୍ଚାଇ ଦେଇଥିଲା ସେ ପ୍ରାୟ ସେହି ସ୍ତରରେ ହିଁ ରହିଗଲେ । ଏହା ଦ୍ୱାରା ଓଡ଼ିଆ ସାହିତ୍ୟ ବିଶେଷ କିଛି ହରାଇ ବସିଲା ବୋଲି ମୋର ଆଶଂକା ।''

'ନବରବି', ନଭେମ୍ବର ୧୯୭୩, ପୃ ୧୦

ସେହିପରି ୧୯୫୦ ମସିହାରେ ସମ୍ବଲପୁରଠାରୁ ଏକ ପତ୍ରରେ ବିଦ୍ୟୁତ୍‌ପ୍ରଭାଙ୍କ ପାଖକୁ ଡ: ମାନସିଂହ ଲେଖିଥିଲେ–

"ତୁମର ମୋ ନିକଟରେ କୃତଜ୍ଞ ହେବାର କିଛି ନାହିଁ, ତୁମର ପ୍ରତିଭାର ବିକାଶ ଦିଗରେ ମୁଁ ଯଦି କିଞ୍ଚିତ୍ ସହାୟତା କରିଥାଏ ତେବେ ଏହା ମୋର କୃତାର୍ଥତା । ମୋ ଜୀବନରେ କିନ୍ତୁ ବରାବର ତୁମେ ଏକ ଅବଶୋଷ ରଖିଦେଲ ଅଧିକା ପାଠ ନପଢ଼ି ।" (ହାତଲେଖା ଚିଠି ୨୮.୮.୧୯୫୦)

ଏକାଧାରରେ ପରିବାର, ସମାଜ ଓ ସାହିତ୍ୟ ସେବା ଥିଲା କବି ବିଦ୍ୟୁତ୍‌ପ୍ରଭାଙ୍କ ଜୀବନର ଏକ ବ୍ରତ । ଆମେ ଦେଖୁ ଯେ ବିବାହ ପରେ ନୂତନ ପ୍ରଣୟରେ ସେ ମୁଗ୍ଧ ହୋଇଛନ୍ତି –

"ସେ ଅନେକ ଦିନର ପୁରୁଣା
ଦୂର ଶାଗୁଆ ଜୀବନ ସ୍ମୃରତି
ଯେଉଁ ବୟସର ମଧୁ ମଦିରା
ଭରେ ତରୁଣ ପରାଣେ ଫୁରତି ।

X X X

ଦିନେ ସପନେ ମୋହନ ମୂରତି
ଲଭି ସଙ୍ଗ ବିହୀନ ଭବନେ,
ଲାଜେ ଉଠିଥିଲି ମୁଁ ଯେ ପୁଲକି
ଚାହିଁ ମୁକୁଳା ଚଇତି ଗଗନେ ।"

(ଝରାଶିଉଳି)

ମାତୃତ୍ୱ, ଜୀବନ ଓ ସାହିତ୍ୟ ଚର୍ଚ୍ଚାନେଇ ତାଙ୍କର ଅନେକ କବିତା ରଚିତ । ଯେପରି –

"ଝୁଲାଉଁ ଝୁଲାଉଁ କୋଳେ ଜାକି ତା'ରେ
ଗାଇ ମୁଁ ଗୀତି
କହିଲେ ପଡ଼ୋଶୀ– 'ଲେଖାପଢ଼ା ଏବେ
ହୋଇଲା ଇତି' ।"

X X X

''ଉଦାସେ ଅନାଇ କହିଲି ମୁଁ ହସି
ମାମୁଲି ହସ—
'ଛୁଆ ବୋଲି ଖଣ୍ଡେ କୁହଇ ତ ଆଉ
ଆଠ କି ଦଶ' ।''

X X X

''ଫଳହୀନ ତରୁ ସବୁରି ଆଖିକି
ଦିଶଇ ବିଷ
କୁନି ଝିଅଟି ମୋ କୋଟି ମିନତିର
ଦେବତାଶିଷ ।''

(କୁନିଝିଅ—ସଂଚୟନ)

ସେହିପରି 'ପ୍ରତିଘାତ' କବିତାରେ ଏକ ସୃଜନଶୀଳ ନାରୀଚେତନାର ବିଦ୍ରୋହୀ ମନୋଭାବ ପ୍ରକାଶ ପାଇଛି :

''ତେଣେ ପିଠୋଉ ହେଇଚି ଦରବଟା
ଆଲୋ କୁଆଡ଼େ ଗଲା କି ବଡ଼ବୋହୂ
ଏଣେ ଘରଗୋଟାକର ବାର ଛଟା
ଆଜି ରାତି ହବାଯାଏ ପଡ଼ିଥାଉ ।''

''ମୋର ଲେଖିଦେଇଚି କି ଜୀବନଟା
ବିକି ଦେବାପାଇଁ ନିତି ଏହି ଘରେ
ଖାଲି କାମ—କାମ—କାମ ଦିନରାତି
ଆଉ କିଛି ନାଇଁ କ'ଣ ଜୀବନରେ !

ଏକେ ନାରୀ ଜନମ ତ ରଡ଼ ନିଆଁ
ତହିଁ ଗୃହ-ଜଞ୍ଜାଳ କିରାସିନି
ଯେବେ କଲମ ଧଇଲି ଶୁଣେଁ ଗାଳି,
ତାକୁ ଛାଡ଼ିଲେ ବି ହୁଏ ଖିନି ଖିନି ।

X X X

ସେ ମୋ ସବୁବେଦନାର ପ୍ରଲେପନ
ସେ ମୋ ସବୁ ଦୁଃଖର ଗଉରବ

ସେ ଯେ ରିକ୍ତ ନିଦାଘ ବନାନୀର
ନବ ମେଘ-ମହ୍ଲାର କଳରବ ।

ମୁଁ ଯେ ବଖାଣି ନପାରେ ଯେତେ ଖୁସି
ସିଏ ଢାଳିଦିଏ ମୋର ବୁକୁ ତଳେ
ଏକ ବତୀସୀ ମୁହଁର ଶିଖାପରି
ମୋର କବିତା-ପ୍ରଦୀପ ଆଜି ଜଳେ ।''

(ସଂଚୟନ)

ତାଙ୍କ ରକ୍ଷଣଶୀଳ ପିତାଙ୍କ ଜୀବନକାଳରେ କୌଣସି ସଭାସମିତିକୁ ନଯିବା ପାଇଁ ପ୍ରତିଶ୍ରୁତି ଦେଇ, ବିଦ୍ୟୁତ୍‌ପ୍ରଭା ପ୍ରାୟ ଘରର ଚାରିକାନ୍ଥ ମଧ୍ୟରେ ରହିଗଲେ । ତାହା ସତ୍ତ୍ୱେ ଜୀବନ କାଳରେ ସେ ଯଥେଷ୍ଟ ସାଧନା କରି ଯଥେଷ୍ଟ ସମ୍ମାନ ପାଇଥିଲେ । 'ଓଡ଼ିଶା ଶିଶୁ ସାହିତ୍ୟ କମିଟି' ତରଫରୁ ସେ କେତେଥର ପୁରସ୍କୃତ ହୋଇଥିଲେ । 'ପ୍ରଜାତନ୍ତ୍ର ପ୍ରଚାର ସମିତି' ଦ୍ୱାରା ମଧ୍ୟ ଅଭିନନ୍ଦିତ ହୋଇଥିଲେ । ୧୯୬୨ରେ ତାଙ୍କ ଦ୍ୱାରା ରଚିତ କବିତା ସଂକଳନ 'ସଂଚୟନ' ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ ହୋଇଥିଲା । ମୃତ୍ୟୁପରେ ୧୯୭୮ ମସିହାରେ ବିଦ୍ୟୁତ୍‌ପ୍ରଭା ସ୍ମରଣିକା କମିଟି ଦ୍ୱାରା ଏକ ସ୍ମରଣିକା ପ୍ରକାଶିତ ହୋଇଥିଲା । ସେଥିରେ କେତେଜଣ ବିଶିଷ୍ଟ ସାହିତ୍ୟିକ ତାଙ୍କ ଜୀବନ ଓ ସାହିତ୍ୟ ଉପରେ ଆଲୋଚନା କରିଥିଲେ । ୧୯୮୩ ମସିହାରେ ପ୍ରକାଶିତ ହେଲା ତାଙ୍କର ଗ୍ରନ୍ଥାବଳୀ ଦୁଇ ଖଣ୍ଡରେ ଏବଂ ତାହାର ପ୍ରକାଶକ ଥିଲେ କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ ଓ ସଂପାଦକ ଡ: ନିତ୍ୟାନନ୍ଦ ଶତପଥୀ । ଏବେ ମଧ୍ୟ ସାହିତ୍ୟିକମାନେ ତାଙ୍କ ରଚନା ଉପରେ ଆଲୋଚନା କରି ପ୍ରବନ୍ଧମାନ ଲେଖୁଛନ୍ତି ଓ ସେସବୁ ପ୍ରକାଶ ପାଉଛି । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଏକ ନ୍ୟାସ ପ୍ରତିଷ୍ଠିତ ହୋଇଛି । ପ୍ରତିବର୍ଷ ଜଣେ କୃତୀ ଛାତ୍ରୀ କିଛି ଉପହାର ପାଉଛନ୍ତି ଓ ତାଙ୍କ ସାହିତ୍ୟ ଉପରେ ଆଲୋଚନା ହେଉଛି । ଏ ସବୁରୁ ମନେହୁଏ ତାଙ୍କର ସାରସ୍ୱତ ଅବଦାନ କାଳଜୟୀ । ପାର୍ଥିବ ଜୀବନରେ ସେ ଅଳ୍ପାୟୁ ହେଲେହେଁ ସାହିତ୍ୟରାଜ୍ୟରେ ସେ ଦୀର୍ଘାୟୁ । ଯଥାର୍ଥରେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ଭାଷାରେ—''ନାରୀର ଦେହ, ମନ ଓ ଆକାଂକ୍ଷା ବିଷୟରେ ଅନେକ ସାହିତ୍ୟ ଓଡ଼ିଶାରେ ଲେଖାଯାଇଛି । କିନ୍ତୁ ପ୍ରଧାନତଃ ପୁରୁଷ ଏହା ଲେଖିଚି । ସମାଜର ପ୍ରମତ୍ତତାଗ୍ରସ୍ତ ନାୟକ ଓ ବିଧାୟକ ହିସାବରେ ନାରୀକୁ ପରିପୂର୍ଣ୍ଣ ସମଗ୍ର ଦୃଷ୍ଟିଦେଇ ସେ ଦେଖି ପାରିନାହିଁ, ତା'ର ଆଖିରେ ନାରୀ ପ୍ରଧାନତଃ କୌତୁକ-

ପିତୁଳା ହୋଇ ରହିଛି । ତା'ର ଭୋଗମୁଣିରେ ଲୋଭ-ସଞ୍ଚିତ ଭିକ୍ଷାମୁଠି ମାତ୍ର ହୋଇ ନାରୀ ପଡ଼ିରହିଛି । ନାରୀ ଯେ କେବଳ ଶରୀର ନୁହେଁ, କେବଳ ଚାହାଣି ଓ ଚାତୁରୀର ଚୁଆ ଚନ୍ଦନରେ ମଠା ହୋଇଥିବା ଭୋଗ–କଳ୍ପନାର ସାମଗ୍ରୀ ନୁହେଁ–ନାରୀ ଯେ ଜଣେ ମଣିଷ–ଠିକ୍ ପୁରୁଷ ପରି ଜଣେ ମଣିଷ–ବିଦ୍ୟୁତ୍‌ପ୍ରଭାଙ୍କର 'ସ୍ୱପ୍ନଦୀପ' ଓଡ଼ିଶାରେ ତାର ସନ୍ତକ ହୋଇ ରହିବ । ନାରୀ ତା'ର ଜୀବନକୁ ଯେ ସମସ୍ତଙ୍କଠାରୁ ଅଧିକ ନିପୁଣ ଓ ସ୍ୱାଭାବିକ ଭାବରେ ଭାଷା ଦେଇ ଫୁଟାଇ ପାରିବ 'ସ୍ୱପ୍ନଦୀପ' ତାହାରି ପ୍ରମାଣ ଦେଇ ଯାଇଚି ।''

('ଓଡ଼ିଆ କାବ୍ୟର ଭବିଷ୍ୟତ' – ଡଗର
ଜୁନ ୧୯୫୬ ସଂଖ୍ୟା)

ପ୍ରଫେସର, ଇଂରାଜୀ ବିଭାଗ
କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ
ହାଇଦ୍ରାବାଦ୍-୪୬

ଡ: ସଚ୍ଚିଦାନନ୍ଦ ମହାନ୍ତି

---

ମୁଁ ମୋର ମାତା ସ୍ୱର୍ଗତା ବିଦ୍ୟୁତ୍‌ପ୍ରଭା ଦେବୀ, ପିତା ଶ୍ରୀ ପଞ୍ଚାନନ ମହାନ୍ତି, ବନ୍ଧୁପତ୍ନୀ ଡ: ସ୍ମିତା ମହାନ୍ତି, ପ୍ରକାଶକ ଶ୍ରୀ ସହଦେବ ପ୍ରଧାନ (ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ), ଲେଖକ ଅଧ୍ୟାପକ ସୁଧାଂଶୁ ଶେଖର ରାୟ ଓ ଆତ୍ମୀୟ ଡ: ସନାତନ ମହାନ୍ତିଙ୍କୁ ସେମାନଙ୍କର ସାହାଯ୍ୟ ଓ ସହାନୁଭୂତି ପାଇଁ କୃତଜ୍ଞତା ଜ୍ଞାପନ କରୁଛି ।

# ସୂଚୀ

## ୪. ଆଧ୍ୟାତ୍ମିକ/ଭକ୍ତିକବିତା: [ ୨୧୯-୨୪୬ ]

---

## ପ୍ରାରମ୍ଭ

# ଜନ୍ମଭୂମି

ଆମ୍ଭ ଜନ୍ମଭୂମି ଏ ଉତ୍କଳ ଦେଶେ
ଆମେ ତା ସନ୍ତାନ ଉତ୍କଳବାସୀ
ଯେଉଁଆଡ଼େ ତୁମେ କର ଦୃଷ୍ଟିପାତ
ଉଛୁଳି ପଡ଼ୁଛି ସୁଷମାରାଶି ।

ପର୍ବତ କନ୍ଦରେ ନିର୍ଝର-ନିଃସ୍ୱନ,
ସହକାର-କୁଞ୍ଜେ କୋଇଲି ଡାକ,
ମଳୟ ପବନ କୁସୁମ କାନନ
ଦୂରାକାଶେ ଦେଖ ଉଦେ ଶଶାଙ୍କ ।

ନୀଳପାରାବାର ଜଳ ଥୁରୁ ଥୁରୁ
ତରଙ୍ଗମାଳାର ଅବୋଧ୍ୟ ଗୀତ,
ନାଉରୀ ଭାଇଟି ଗୀତ ଗାଇ ଗାଇ
ଦୂରଦେଶେ ବାହେ ସୁନା ବୋଇତ ।

ଯେତେ ଦିନଯାଏ ଥିବ ଏ ଆକାଶ
ଯେତେ ଦିନଯାଏ ଥିବ ଏ କ୍ଷିତି,
ଭାସୁଥିବ ଭାଇ ବିଶ୍ୱ-ପାରାବାରେ
ଓଡ଼ିଆ ପୁଅର ଅମର କୀର୍ତ୍ତି ।

ଉତ୍କଳ ଦେଶର କାଠଯୋଡ଼ୀ ବନ୍ଧ
ଏବେ ତ ଅକ୍ଷୁଣ୍ଣ ଅଛିରେ ରହି,
ମର୍କତ କେଶରୀ ନାମ କାଠଯୋଡ଼ୀ
କଳସ୍ୱନେ ଗାଇ ଯାଉଛି ବହି ।

କହେ ଇତିହାସ ନୋହେ ପରିହାସ
ପୁରାତନ ବାରବାଟୀ ମହିମା,
ମର୍ମରନିର୍ମିତ ନବତଳ ସୌଧ
ଲଙ୍ଘିଥିଲା ଯାହା ସୁଷମା ସୀମା ।

ଓଡ଼ିଆ ବିନ୍ଧାଣି ଯାଇଛି ନିର୍ମାଣି
ରହିଛି ତା' ପୂର୍ବ ଶିଳ୍ପ ସମ୍ପତ୍ତି,
ଆଜି କିମ୍ପା କହ ସେହି ଓଡ଼ିଆ ହେ
କାରୁକାର୍ଯ୍ୟ ଦେଖି ମଥା ପୋତନ୍ତି ।

କୋଣାର୍କ ମନ୍ଦିର ଶିଳ୍ପ କଉଶଳ
ଦେଖି ପରଶଂସେ ଦୂର ପଥିକ,
କବାଟ କୋଣରେ ବସିଛି ନୀରବେ
ଧିକ ଏ ଓଡ଼ିଆ ଜନମ ଧିକ ।

ଏକାମ୍ର କାନନ- ଶିଳ୍ପକଳା ଦେଖି
ବିସ୍ମୟେ ବିଦେଶୀ ପୋତୁଛି ମଥା,
ଏ ଓଡ଼ିଆ ଜାତି ଶିଳ୍ପ ବଇଭବ
ଜଗତବିଖ୍ୟାତ ରହିଛି କଥା ।

ନିର୍ଜନ ବାଲିରେ ହାହାକାର କରେ
ଓଡ଼ିଆ କୋଣାର୍କ ଭଗ୍ନ ମନ୍ଦିର,
ଓଡ଼ିଆ ବଣିକ ପୋତ କାହିଁ ବୋଲି
କାନ୍ଦୁଛି କି ନୀଳ ସାଗର ନୀର !

ଦିନ ଥିଲା ଯେବେ ଲାଗିଲେ ବୋଇତ
ସାଧବ ବୋହୂଏ ଓଢ଼ଣା ଟାଣି,
ସୁବର୍ଣ୍ଣ ପ୍ରଦୀପେ ବୋଇତ ବନ୍ଦାଇ
ଘରେ ନେଉଥିଲେ ରତନ ଛାଣି ।

ଆଜି କାହାନ୍ତି ସେ ଓଡ଼ିଆ ସାଧବେ
କାହିଁ ତାଙ୍କ ପୂର୍ବ ବଳ ସାହସ ?
ତାଙ୍କ ବଂଶଧର ବୁଲନ୍ତି ବିଦେଶେ
ଧରି ଦୀନ-ହୀନ ଭିଖାରି ବେଶ ।

ଧ୍ୱଂସ ଅବଶେଷ ରହିଛି ଯା' ଏଥି
ଆଉ କେଉଁ ଦେଶେ ଅଛିରେ ଭାଇ,
ଓଡ଼ିଆ ଜାତିର ପୂର୍ବ ଗଉରବ
ସାଗର ଲହରୀ ଯାଉଛି ଗାଇ ।

ଏହି ତୀର୍ଥରାଜ ଉତ୍କଳ ଭୂମିରେ
ଲଭିଛୁ ଜନମ ହେବ ମରଣ,
ନ କରି ନିରାଶ ଖୋଲିଦିଅ ପ୍ରଭୁ
ଉତ୍କଳବାସୀଙ୍କୁ ମୁକ୍ତି-ତୋରଣ ।

□ □

# କୋଣାର୍କ

କୋଣାର୍କ ! ତୋ ଅଙ୍ଗେ ଫୁଟେ ବାରଶତ ଶିଳ୍ପୀଙ୍କର ସ୍ମୃତି,
ଲିଭି ନାହିଁ ଆଜି ସୁଦ୍ଧା ଉତ୍କଳର ଅନଶ୍ୱର କୀର୍ତ୍ତି ।

ଲିଭି ନାହିଁ ଶିଳା ଦେହୁଁ ରାମାୟଣ ବିରାଟ କାହାଣୀ,
ଆର୍ଯ୍ୟର ପ୍ରତିଭା ଆଜି ଟେକିଛି ମା ଉତ୍କଳ-ଜନନୀ ।

ତୋ ଭାଗ୍ୟର ବିପର୍ଯ୍ୟୟେ ପାରାବାର ମରୁଭୂମି ଆଜି,
ଦେବାଳୟ ବିକଳାଙ୍ଗ ଶିରୀ ମାତ୍ର ଯାଇ ନାହିଁ ହଜି ।

ଯାଇଛି ତୋ ଚୂଡ଼ାପରେ ବହି କେତେ ବିଦ୍ରୋହ ତୋଫାନ
ନୀରବ ଏ ମରୁବକ୍ଷେ କଣ୍ଠ ତୋର ମୂକ, ଭାଷାହୀନ ।

ମସ୍ତକେ ବିରାଟ ନଭ ଅଙ୍କେ ତାର ରବି ଶଶୀ ଧରି,
ନିମ୍ନେ ତୁ ଦଣ୍ଡାୟମାନ, ଚିର ମୂକ ଆର୍ଯ୍ୟସୁତ ସ୍ମରି ।

ଦୀର୍ଣ୍ଣ ତୋର ବୁକୁ ଆଜି, ଛିନ୍ନ ତୋର ଲୋହିତ ପତାକା,
ଭଗ୍ନାଂଶ ରହିଛି ଖାଲି ଶିଳ୍ପୀର ଯେ ରକ୍ତମୁନେ ଲେଖା ।

ସେ ଲେଖା ପଢ଼ଇ ବିଶ୍ୱ ଥାପି ତାର ବିମୁଗ୍‌ଧ ନୟନ,
ବୃନ୍ତଝରା ପୁଷ୍ପସମ ଦେହୁ ତୋର ଖସିଛି ପାଷାଣ ।

'କେ କୋଣାର୍କ ସୃଷ୍ଟିକର୍ତ୍ତା' ପଚାରିଲେ ଦେବ ତା ଆଭାସ,
ଆର୍ଯ୍ୟ ଶିଳ୍ପୀଙ୍କର ଯେଉଁ ପୁରାତନ ଶିଳ୍ପ-ଇତିହାସ ।

ନାହାନ୍ତି ସେ ଶିଳ୍ପୀ ଆଜି ବିରାଜିତ ତାଙ୍କ ମଧୁ ସ୍ମୃତି,
ଗାଉଥିବ ସେ କୀରତି କାଳ କାଳ ଶତ ମୁଖେ କ୍ଷିତି ।

ବିରାଟ ତୋ ରମ୍ୟତନୁ ସୂଚୀ ଅଗ୍ରେ ଗଢ଼ି ଆର୍ଯ୍ୟସୁତ,
ଶିଳ୍ପର ନୈପୁଣ୍ୟେ କଲେ ବିଦେଶୀର ନୟନ ଚକିତ ।

ନାହାନ୍ତି ସେ ଶିଳ୍ପୀ, ଆଜି ନାହିଁ ତାଙ୍କ ଭୁଜେ ଭୀମବଳ,
ଦେବତାବିହୀନ ତୋର ଶୂନ୍ୟ ଗୃହ କରେ ହାହାକାର... ।

ଚିରଦିନ ରବିତଳେ ରଖିବାକୁ ତୋ କୀର୍ତ୍ତି-ସମ୍ପଦ,
ଅମିତ ସାହସ ବଳେ ହେଲା ପ୍ରାଣ ବୀର ଧର୍ମପଦ ।

ତା ମୃତ୍ୟୁର ସାକ୍ଷୀ ଆଜି ପାହାନ୍ତିର ଦୀପ୍ତ କୁଆଁତାରା,
ଅମ୍ବୁଧି ଉତ୍ତାଳ ଉର୍ମି ଆଉ ତୋର ଲୁପ୍ତ ଭଗ୍ନ ଚୂଡ଼ା ।

ସୁଦୂର ବିଦେଶୀ ପାନ୍ଥ ଧାଏଁ ଯେବେ ତୋ ଶିଳ୍ପ ଦର୍ଶନେ,
ସଜଳ ନୟନ ତାର ଲାଖିରହେ ସ୍ଖଳିତ ପାଷାଣେ ।

କବି ତୋର ସ୍ମୃତିଟିକ ଇତିହାସେ ରଖିଛି ସାଇତି,
ଅମର କାହାଣୀ ତୋର ଦିନୁଁଦିନ ଲଭେ ଦିବ୍ୟଜ୍ୟୋତି ।

କୋଣାରକ ଛବି ତୋର ଉତ୍କଳର ଚାରୁ ଅଳଙ୍କାର,
ତୋ ପାଇଁ ଉତ୍କଳୀ ଗର୍ବ କରୁଥିବେ ଯୁଗ ଯୁଗାନ୍ତର ।

ଚାହାଁରେ ପଥିକ ଭାଇ ତୋର ଆର୍ଯ୍ୟ ବଂଶଧର କୀର୍ତ୍ତି,
ଲିଭି ନାହିଁ, ଲିଭିବନି କେବେ ଏହି ଆର୍ଯ୍ୟ ଶିଳ୍ପ-ସ୍ମୃତି ।

□ □

# ନାରୀ

ଶୁଣିଛି କି କେବେ ଏ ଦେଶ ରମଣୀ
ଶୁଣିଛି ତା ଜାତି ଅତୀତ ଜୀବନୀ ।

ତାର ମହୀୟସୀ କୀର୍ତ୍ତି ଇତିହାସ
ଭାବିଛି କି କେବେ ନିବେଶି ମାନସ ?

ଯେଉଁ ଦେଶ ନାରୀ ପୁରାଣପ୍ରସିଦ୍ଧ
ରାଜନୀତି ଶସ୍ତ୍ର ଶାସ୍ତ୍ର-ବିଶାରଦ ।

ଯେ ଦେଶ ବୀରେନ୍ଦ୍ର ବରଣୀୟା ନାରୀ
ସ୍ୱରଗ ଲଭିଛି କଣ୍ଠେ ଛୁରୀ ମାରି ।

ଦେଖାଇ ଯାଇଛି ସତୀତ୍ୱ ଉତ୍କର୍ଷ
ନାରୀର ଯାହା ହିଁ ଜୀବନସର୍ବସ୍ୱ ।

ବୀରାଙ୍ଗନା, ସତୀ, ସାଧ୍ୱୀ ଦୁର୍ଗାବତୀ
ଜାଳିଥିଲେ ଯେହ୍ନୁ ପୁଣ୍ୟାଲୋକ ବତି ।

ଯେ ଦେଶ ବିଦୁଷୀ ନାରୀ ଲୀଳାବତୀ
ଗଣିତ ବିଦ୍ୟାରେ ସୁପଣ୍ଡିତା ଅତି ।

ଯେ ଦେଶ ରମଣୀ ରଘୁକାନ୍ତା ସୀତା
ସତୀ ଶିରୋମଣି, ମହା ପତିବ୍ରତା ।

ଯେଉଁ ଦେଶ ସତୀ ଦ୍ରୌପଦୀ ସାବିତ୍ରୀ
ଯେଉଁ ଦେଶ ନାରୀ କୁନ୍ତୀ ଦମୟନ୍ତୀ ।

ବୀରପ୍ରସବିନୀ ମୋ ଦେଶ ମୃତ୍ତିକା
ଲଲାଟେ ଯାହାର ମାତୃ ଜୟଟିକା ।

ଆମେ ତା ସନ୍ତାନ, ତାର ବଂଶଧର
କହିବାକୁ ଏହା ବଡ଼ ଲଜ୍ଜାକର ।

ପୂର୍ବେ ଭାରତର କୁମାର କୁମାରୀ
ଶିଖୁଥିଲେ ଯୁଦ୍ଧ କରେ ଅସ୍ତ୍ର ଧରି ।

ଆଜି ପରା ଆମ ଦେଶର କୁମାରୀ
କାଟୁଛନ୍ତି କାଳ ତାସ ପଶା ଖେଳି ।

ସୁନ୍ଦର ଶରୀର ଅଳଙ୍କାରେ ଭରି,
ବସିଛନ୍ତି ଚିତ୍ର ପ୍ରତିମାଟି ପରି ।

ଚକ୍ଷୁ କର୍ଣ୍ଣ ଥାଇ ସେ ଅନ୍ଧ ବଧିର
ଏହି କି ପ୍ରେରିତ ପ୍ରେରଣା ବିଧିର !

କବାଟ କୋଣରେ ପଶିଛନ୍ତି ଯାଇ
ଦେହେ ତାଙ୍କ ରବି-ରଶ୍ମି ପଡ଼େ ନାହିଁ ।

ସଦା ସେହୁ ଦୁଃଖୀ ସ୍ୱାଧୀନତା ପାଇଁ
କିନ୍ତୁ, କଣ୍ଠେ ଭାଷା ହୃଦେ ଆଶା ନାହିଁ ।

ପୁରୁଷ ରମଣୀ ମିଳି ଏ ସଂସାର
ନାରୀକୁ କିପାଇଁ ତୁଚ୍ଛ ମନେକର ?

ନାରୀ ପାଇଁ ସଦା ପୁରୁଷ ମହତ
ସେ କିପାଁ ସହିବ ଲାଞ୍ଛନା କହ ତ ?

କେ ବୁଝଇ ନାରୀ ହୃଦ ଅନ୍ତଃସ୍ଥଳ
ହସ ତଳେ ତାର ଅଶ୍ରୁର ନିର୍ଝର ।

ସବୁ ଦିନେ ସେ କି ସହିବ କଷଣ
ଦୁଷ୍ଟ ସମାଜର ଦୁର୍ନୀତି ନିୟମ !

କରମ ପ୍ରାଙ୍ଗଣେ ରମଣୀର ଡାକ
ତା ଶକ୍ତି, ପ୍ରତିଭା ଯୁଗେ ଯୁଗେ ଟେକ ।

ମାତା, ପତ୍ନୀ, ଭଗ୍ନୀ ରୂପେ ଯେଉଁ ଜାତି
ଘରେ ଘରେ ଯେହୁ ସ୍ନେହ ପ୍ରେମ-ବତି ।

ଜଳାଇଛି, ତାହା ଜଳୁଥିବ ଚିର
ତା ବିନୁ ଅନ୍ଧାରେ ଏ ପ୍ରାଣ ଅସ୍ଥିର ।

ନିଖିଳ ସଂପଦ ତା ବିନୁ ଅସାର
ଏ ନିଃସ୍ୱ ଜୀବନ କରେ ହାହାକାର ।

ଯେ କରେ ଭକତି, ଯେ ଦିଏ ଶକତି
ବିତରେ ସମାଜେ ଯେ ସ୍ନେହ ପୀରତି ।

ତା ପାଇଁ କିପାଁ ଏ ନିଷ୍ଠୁର ଶାସନ
ଏତେ ଅବିଚାର, ନିର୍ମମ ବିଧାନ ।

x x x

କେଉଁଦିନ ପ୍ରାଚୀ ଆକାଶରେ ଉଷା
ଫୁଟିବ, ଫେରିବ ରମଣୀଙ୍କ ଦଶା ।

ତୁମେ ଏକା ଜାଣ ଆହେ ପ୍ରାଣସାଇଁ
ନାରୀ ଜନ୍ମ ଦେଇ ଦୁଃଖ ଦେଖ ନାହିଁ ?

ତାଳ ଆଶୀର୍ବାଦ ହେ ମଙ୍ଗଳମୟ
ମୋ ଦେଶ ନାରୀର ହେଉ ସଦା ଜୟ ।

□ □

## ପଣପ୍ରଥା

ଲେଖନୀ ମୁନରୁ ମସି ଯାଏ ଶୁଖି
ସ୍ପନ୍ଦନହୀନ ପ୍ରାଣ
ସମାଜ ସମୀପେ କାକୁତି ମିନତି
ସବୁ ଖାଲି ଅକାରଣ ।

ସମାଜ-ଦେବତା ଚରଣେ ଗୁହାରି
'ଅରଣ୍ୟେ ରୋଦନ' ସରି
ତାହାର ନିର୍ମମ ନିଷ୍ଠୁର ସଙ୍କେତ
ପ୍ରାଣେ ଦିଏ ବ୍ୟଥା ଭରି ।

ଉଚ୍ଛନ୍ନ କରିଛି ଏ ଅନ୍ଧ ସମାଜ
ଏ ଦେଶର ପରିବାର
ବିବାହ ବଜାରେ ପଡ଼ିଅଛି ନିତ୍ୟ
ପଣପ୍ରଥା ହାହାକାର ।

ଦୁଃଖ ଦୁର୍ଦ୍ଦଶାର ଚରମ ସୀମାକୁ
ଆଗେଇ ଚାଲିଛି ଦେଶ
ଭୁଲି ଜୀବନର ବିକାଶ ସୋପାନ
ମହନୀୟ ଆଦରଶ ।

ସମାଜ ଜୀବନ କଳୁଷିତ ଅତି
ରୂପହୀନ ତାର ରୂପ
ବହନ କରିଛି କନ୍ୟା-ପିତାର
ବ୍ୟଥା, ଅଶ୍ରୁ, ଅଭିଶାପ ।

ଏପରି ସମାଜ ମେରୁଦଣ୍ଡେ ପଡୁ
ଅଦିନ ଅଶନି ବାଣ
ସକଳ ସନ୍ତାପ ଦୁଃଖ ଦୁର୍ଦ୍ଦଶାର
ହେଉ ଚିର ଅବସାନ ।

ପବିତ୍ର ବିବାହ ନ ହେଉ ଯୁବକେ
ବିପଣୀର କାରବାର
ଦାୟ-ଗ୍ରସ୍ତ ପିତା ତପତ ନିଃଶ୍ୱାସେ
ନୋହୁ ଦେଶ ଛାରଖାର ।

□ □

# ବାଗ୍ମୀ ବିଶ୍ୱନାଥ

ଶୁଭକ୍ଷଣେ ଜନ୍ମି ଆହେ ବୀର ବିଶ୍ୱନାଥ !
ଚାଳିଲ ନିପୁଣ କରେ ସାରସ୍ୱତ ରଥ ।
ଉତ୍କଳମାତାର ତୁମେ ସୁଯୋଗ୍ୟ ସନ୍ତାନ
ବକ୍ତୃତା-ମଣ୍ଡପେ ଥିଲ କେଶରୀ ସମାନ ।
ସାହିତ୍ୟ-ପୁରୋଧା ବାଗ୍ମୀ ହେ ପ୍ରେରଣାଦାତା,
ତୁମ ସମ ପୁତ୍ର ଧରି ଧନ୍ୟ ଦେଶମାତା ।
ସଞ୍ଜୀବନୀ ମନ୍ତ୍ର ପଢ଼ି ସାହିତ୍ୟ-ମଶାଣେ
ଯାଇଅଛ ସ୍ମୃତି ତବ ରଖି କୋଟିପ୍ରାଣେ ।

ହେ ନିର୍ଭୀକ ସଂସ୍କାରକ ! ବାଜି ତୁମ କର
ଭଜିଅଛି ଲୟ ଶତ ଅନ୍ଧ କୁସଂସ୍କାର ।
ସନ୍ଦର୍ଭରଚକ ଧୀର ନିର୍ଭୀକ ସରଳ !
ସଞ୍ଚାରିଛ ଓଡ଼ିଆର ପ୍ରାଣେ ନବ ବଳ ।
ଆବର ଉତ୍ସାହଶକ୍ତି, ଶୋଣିତ ସ୍ପନ୍ଦନ
ଦେଶମାତୃକାର ତୁମେ ବରେଣ୍ୟ ନନ୍ଦନ ।
ଉପାଧି ବରଜି ଆହେ ଦେଶଭକ୍ତ ବୀର !
ରଖିଲ ଦୃଷ୍ଟାନ୍ତ ତୁମ ମହତ ପ୍ରାଣର ।
ତେଣୁ ତବ ସ୍ମୃତି ଆହେ ଅମୃତସନ୍ତାନ !
ରହିଲା ସାରଦା ପୀଠେ ଚିର ଅମଳିନ ।

ଅସୀମ ସାହସ ଭରି ନିଃଶଙ୍କ ହୃଦୟେ
ତୁମ ପରି ସଭାମଞ୍ଚ ମୁଖରିଛି କିଏ ?
ଖେଳାଇ ଚମକ କେ ବା ବିଦ୍ୟୁପ୍ରଭା ଜିଣି
ତୁମ ସମ ଢାଳି ପ୍ରାଣେ ଅଗ୍ନିମୟୀ ବାଣୀ

ଗରଜି ସଭାରେ ମନ୍ଦ୍ର ସ୍ତନିତ ସମାନ
ଉଦ୍‌ବୁଦ୍ଧ କରିବ କ୍ଷଣେ ସଭାସଦମାନ ?
ଓଡ଼ିଆ ଜାତିର ଯେତେ ଅନ୍ଧ କୁସଂସ୍କାର
ବଳିଷ୍ଠ ସାହିତ୍ୟ ଭାଷେ କରି ତା ପ୍ରଚାର
ନବଯୁଗସ୍ରଷ୍ଟା ରୂପେ ସ୍ଥାପି ମୁଦ୍ରାଯନ୍ତ୍ର
ଦେଖାଇଛ ତୁମ ମହା ଆଦର୍ଶ ସର୍ବତ୍ର ।

ସାହିତ୍ୟ ପୁରୋଧା ଭୀମକର୍ମା ବିଶ୍ୱନାଥ !
ତୁମେଟି ଉତ୍କଳେ ନାରୀଶିକ୍ଷା-ଅଗ୍ରଦୂତ ।
ଯେଣୁ ଅନ୍ତପୁରାବଦ୍ଧା-ଦୁର୍ଦ୍ଦଶା ବିଲୋକି
ଜାଗରଣ ଇତିହାସ ଗଲ ତୁମେ ଲେଖି
'ବିବିଧ ପ୍ରବନ୍ଧେ' ଯାହା ଜାତିର ପରାଣେ
ଏବେ ସୁଦ୍ଧା ନବ ଶକ୍ତି ଉଦ୍ଦୀପନା ଆଣେ ।
ତୁମ ତିରୋଭାବେ ଦେଶ ହୋଇ ହୀନବଳ
ସ୍ମୃତିଟି ତୁମରି ଯାହା ରଖିଛି ସମ୍ବଳ ।
ମାତ୍ର ତୁମ ବହୁମୁଖୀ ମହତୀ ପ୍ରତିଭା
ଦେଶ ଆଗେ ଚିରଦିନ ହୋଇଥିବ ଉଭା ।



## ଉତ୍କଳ-ଭାରତୀ କୁନ୍ତଳା

ଉତ୍କଳ-ଉତ୍ସଙ୍ଗେ ଜନ୍ମି ଶୁଭକ୍ଷଣେ କୁନ୍ତଳାକୁମାରୀ !
ଦେଖାଇଲ ନାରୀଶକ୍ତି ଜୀବନରେ ଶୁଭକର୍ମ କରି ।
ରମଣୀକୁଳ-ଆଦର୍ଶ କବିରାଜ୍ଞୀ ହେ ପ୍ରଗତିଶୀଳା !
ଦେବୀ ବୀଣାପାଣିଙ୍କର ଯୋଗ୍ୟସୁତା ସ୍ୱର୍ଗତା କୁନ୍ତଳା !
ସାହିତ୍ୟ-ଗଗନତଳେ ତୁମେ ଏକ ଦୀପ୍ତ ଧ୍ରୁବତାରା
ରମଣୀ-ସୁମନକୁଳେ ତୁମେ ସ୍ୱର୍ଗ ପାରିଜାତ-ଝରା ।

ତୁମ ଉଚ୍ଚ ଆଦରଶ ନାରୀପ୍ରାଣେ ଆଣିଛି ସ୍ପନ୍ଦନ
ବାଢ଼ିଛ ଭାରତୀ-ପଦେ ଯେଣୁ ଶତ କବିତା-ସୁମନ ।

ବିଧାତାର କ୍ରୂର ଶାପେ ହତଭାଗୀ ଏ ଉତ୍କଳମାତା
ଅକାଳେ ଯା ହରାଇଲା ତୁମ ଭଳି ଗୁଣବତୀ ସୁତା ।

ଦ୍ୱିତୀୟା କୁନ୍ତଳା କେବେ ଅବତୀର୍ଣ୍ଣା ହୋଇ ଏ ମରତେ
କରିବ ପୂରଣ ତବ ଶୂନ୍ୟସ୍ଥାନ ନାହିଁଟି ପରତେ ।

ଚିରଦିନ ପାଇଁ ଗଲ ମରଣର ଯବନିକା ପାରେ
ଆଉ କି ଏ ଦେଶନେତ୍ର ଦେଖିବ ସେ ଚାରୁ ମୁଖ ବାରେ ?

ଉତ୍କଳେ ତୁମରି ପରି କେହି ମାତା କରିବ ପ୍ରସବ
ଦ୍ୱିତୀୟା କୁନ୍ତଳାଟିଏ, କେବେ ଏହା ହେବ କି ସମ୍ଭବ ?

ବିଧିର ଆଶିଷେ ତୁମେ ଆସିଥିଲେ ଦୀର୍ଘ ଆୟୁ ଲଭି
କାବ୍ୟ-ଜଗତକୁ ନିଶ୍ଚେ ପୂର୍ଣ୍ଣ କରି ପାରିଥାନ୍ତ ଦେବୀ !

ଭାଗ୍ୟଦୋଷୁଁ ସେ ଆକାଂକ୍ଷା ମନେ ତବ ରହିଲା ଅପୂର୍ଣ୍ଣ
ଦରସ୍ଫୁଟ କଢ଼ି ଆହା କୀଟଦଷ୍ଟ ହୋଇଲେ ଯେସନ ।

ପୁରେ ପୁରେ ଜନ୍ମିବାକୁ ତୁମ ପରି ବିଦୁଷୀ ଲଳନା
ସଞ୍ଜେ ଉତ୍କଳର ବଧୂ ବିଭୁପଦେ କରୁ ନିତ୍ୟ ଜଣା ।

ତେବେ ବା ସେ କୃପା କରି ଶୁଣି ନାରୀ କରୁଣ ଆକୂତି
ଦେବେ ଏ ଉତ୍କଳ ହାତେ ତୁମ ପରି ନାରୀ ବିଦ୍ୟାବତୀ ।

ପୁନରପି ଏ ମାଟିରେ ଜନ୍ମ ଘେନି ହେ ଦେବୀ କୁନ୍ତଳା !
ଭରିବ କି ବାଣୀ-ବକ୍ଷେ ଗୁନ୍ଥି କାବ୍ୟ-କୁସୁମର ମାଳା ?

ସାରଦାଚରଣେ 'ଚମ୍ପା' 'ଶତଦଳେ' ବାଢ଼ିବ 'ଅଞ୍ଜଳି'
ଭାବ-'ଦୂର୍ବା' ଭାଷା-'ବିଲେ' ସଜାଇ ଗୋ 'ଅରଚନା' ଥାଳି ।

ଜୋଛନା ତଳରେ ବସି ହୃଦୟର ଗୋପନ 'ଉଚ୍ଛ୍ୱାସ'
କ୍ଷୁଦ୍ର 'ଶେଫାଳିକା' କାନେ ଥିରି ଥିରି କରିବ ପ୍ରକାଶ ।

'କାଳୀବୋହୂ' ନାମ ଶୁଣି ଭ୍ରୂକୁଞ୍ଚନ କରେ ଯେଉଁ ଜାତି
ତାରିଠାରେ ଦେଖାଇଛ ସୁରଲୋକ ଦେବୀର ଶକତି ।

ପତିହୀନା ବିରହିଣୀ ବୁକୁ କେହ୍ନେ କରେ ହାଇହାଇ
ନିର୍ମମ ସମାଜ ଆଖି ଖୋଲି ତୁମେ ଦେଇଛ ଦେଖାଇ ।

ତାମସ-ଗହ୍ୱରୁ ତୁମେ ରମଣୀକୁ କାଢ଼ିଆଣି ବଳେ
ଧରାଇ ଦେଇଛ ଦେବୀ ! ଜୟ-ଭେରୀ ତାର ବେନି କରେ ।

ଶତମୁଖେ କହିଅଛ ସମାଜରେ କରି ତାର ଟେକ
'ନାରୀ ଶକ୍ତି, ନାରୀ ଦେବୀ—ବିଳାସର ନୁହେଁ କ୍ରୀଡ଼ନକ ।'

ଯାଇଛ ସାହିତ୍ୟ-କୁଞ୍ଜେ ଫୁଟାଇ ଯେ ଶୁଭ୍ର ପାରିଜାତ
ଦେବତାର ଶୁଭାଶିଷେ ରହୁ ତାହା ଚିର ବିକଶିତ ।

ତବ ଗୁଣ ଗାଇବାକୁ କ୍ଷମ କି ମୋ ଦୀନ କଳ୍ପନା
ତୁମ ଯଶେ ଗଉରବ କରେ ଆଜି ଉତ୍କଳ ଲଳନା ।

ଉଜ୍ୱଳ ଆଦର୍ଶେ ତବ ଅନ୍ଧକାର ହେଉ ଦୂରୀଭୂତ
ତୁମରି ମହତ୍ତ୍ୱ ଗୀତି ଗାଇ ନାଚି ଉଠୁ ଖିନ୍ନ ଚିତ୍ତ ।



# ସୁଆରୀ ଡାକ

ନିଛାଟିଆ ଗାଆଁ ଗହୀର ବିଲରେ
ଶଙ୍ଖ ରବ
ଅସ୍ତ ନଭ
ଦକ୍ଷିଣା ବାଆ ଦିବା ଅବସାନେ
ଧାଇଁ ଆସି ଖରେ କହିଗଲା କାନେ
ଅର୍ଦ୍ଧଶୁଆସୀ ଗୋପାଳର ଡାକ
'ହାକୁମ୍ ଧାବ' —
ପଲ୍ଲୀକୋଣରେ ଚହଳ ପଡ଼ିଲା
ଆସୁଚି 'ନାବ'
ଶଙ୍ଖ ରବ ।

ସତେ 'ଲାବଣ୍ୟ' ଗାଆଁ ଝିଅ ମେଳେ
ସୁଷମାଝରା
ସହଣୀ ଧୀରା
ଢଳ ଢଳ ରୂପ ନବ ଯୌବନ
ମୁଖେ ତା ଫୁଟଇ ଉଷା ଚୁମ୍ବନ
ଆୟତ ନୟନେ ଝଲେ ନିଶାନ୍ତ
କାବ୍ୟତାରା
ଅରୁଣ ଅଧରେ ହସଟି ଯେସନ
ପୀୟୂଷଝରା ।

ଦୁଇ ଚାରି କୋଶ ବ୍ୟବଧାନେ ତାର
କରମ ଥାନ
ବିଧିର ଦାନ
ତାହାରି ଭିତରେ ଯାଇଅଛି ବିତି
କେତେ ଯେ ପୂନିଅଁ ଉଁଆସର ତିଥି
ଦଶୋଟି ବରଷ ହୋଇଗଲା ନାହିଁ
ତା ଅବସାନ
କେତେ କାକୁତିରେ ଶାଶୁ ବିଦାକଲେ
ଜନମ ଥାନ
ଡକାଇ ଯାନ ।

ବାହୁନା ଭିତରେ ଢାଳୁଚି 'ନାବନ'
ସରମନତା
ବୁକୁର ବଥା
ଦେଉଁ ସେ ବାହୁନା କାନେ କାନେ ଛୁଇଁ
ଚିର ପରିଚିତ ଗାଆଁ ବନଭୂଇଁ
ଥରି ଉଠୁଥିଲା କହିବାକୁ ପଦେ
ପାସୋରା କଥା
ନୁଆଁଇ ମଥା

ଶେଷ ରାବ ଦେଇ଼ଁ          ନୀଡ଼ ଅଭିମୁଖୀ
ସନ୍ଧ୍ୟା କାକ
ଗାଆଁଟା ଯାକ
ହୁରି ପଡ଼ିଗଲା "ଆସିଲାଣି ଝିଅ"
କେ ନାରୀ କହିଲା "ବନ୍ଧାଇ ନିଅ"
ବଜାଇ ଶଙ୍ଖ
ଧାଇଁଗଲେ ଶୁଣି          ଗାଆଁର ଅନୂଢ଼ା
କୁମାରୀ ଯାକ
'ସୁଆରୀ ଡାକ'

□ □

# ଘାଟେ ତରୁଣୀ

ସନ୍ଧ୍ୟା          ନଇଁଆସେ
ଆକାଶ ତଳେ ତଳେ
କଳସୀ          କାଖେ ଧରି
ତରୁଣୀ ଘାଟେ ଚଳେ ।
ପୁଳିନ          ଏତେବେଳେ
ନିର୍ଜନ ନିଛାଟିଆ
ସନ୍ଧ୍ୟା          ହେଲା କହି
ଶାଖାରେ ଡାକେ ଟିଆ ।
ସୂରୁଯ          ଫଗୁ-କରେ
ତରୁଣ ଗୋରା ଗାଲେ
କାଉଁରୀ-          କନିଆଁର
ସପନ ଛବି ଢାଳେ ।
ସିକତା-          ସୁନା ଶେଯେ
ରୂପସୀ ବଧୂ ଠିଆ

ଖୋସାରେ ଖଞ୍ଜା ତା
ସଞ୍ଜ ସଜ କିଆ ।
ବରଷା ନିଶା ଭୋଳେ
ନଈର ନୀର ଆଜି
ଆପଣା ବୀଚି-ଦୋଳେ
ପଡୁଛି ଆପେ ଭାଜି
ତରୁଣୀ ପ୍ରାଣେ ଛୁଟେ
ବେଦନା-ଖର-ସୁଅ
ଦେବତା ଚରଣେ ତା
ଢାଳିବ ଆଖି-ଲୁହ ।
ଆସିଛି ଏକାକୀ ସେ
କହିନି କାରେ ପୁଣି
ଦେଖିଲେ ଗାଆଁ ନାରୀ
ଦେବେଟି ଶିର ଝୁଣି ।
କି ଅବା ସୁଖ ଆହା
ଏସନ ଜୀବନରେ
ମରମ- ବାଣୀ ଯେବେ
ମରଇ ମରମରେ ।
ତରୁଣୀ ଚାହେଁ ଦୂରେ
ନୟନେ ଭରି ଜଳ
ନଈର ଆର ପାରେ
ଦିଶଇ ଗାଆଁ ତଳ ।
ଭାବନା ଭାଙ୍ଗେ ତା
ତଟର କୋକରବେ,
କଜଳ କଳା ମେଘ
ଘନାଇ ଆସେ ନଭେ ।
ପ୍ରତୀଚୀ- କୋଳେ ବୁଲି
ଚପଳା ଖୋଜେ କାରେ
ବଜର ରହି ରହି
ବାରିଦେ ଡାକ ମାରେ ।

ଅନାଇ ତୀର ବନେ
ତରୁଣୀ ଥରେ ଥରେ
କି ଭାଳି ମନେ ପୁଣି
.ଘଟରେ ନୀର ଭରେ ।
ଖସିଲା ଦେହେ ତାର
ସୁଷମ ନୀପ ଫୁଲ
କହେ ତରୁଣୀ "କାହୁଁ
ଦେବି ମୁଁ ତୋର ମୂଲ ?
କହୁଁ କହୁଁ ତା ହେଲା
ନୟନ ଛଳଛଳ
ସରିତ ତେଣେ ଚାହିଁ
ଗାଇଲା କଳକଳ
ଜାଣିଲା ଏ ଯେ ତାର
ବିରାଟ ଉପହାସ
ନଇଁଲା ମଥା ତାର
ନିଭିଲା ମୁଖୁଁ ହାସ ।
ଚଳିଲା ବ୍ୟଥାଭାରେ
ଚରଣ ଚିପିଚିପି
ବରଷା- ଛିଟା ମାଥେ
ପଡ଼େ ତା ଝିପିଝିପି ।
ସନ୍ଧ୍ୟା ତୋଫାନରେ
ଗରଜେ ତୋଟା ପାଟ
ତରୁଣୀ ଘରେ ଫେରେ—
ନିର୍ଜନ ନଦୀ ଘାଟ ।

□□

# ଲୋଡ଼େ ନାହିଁ ସ୍ୱର୍ଗ

ଲୋଡ଼େ ନାହିଁ ମୁଁ ସ୍ୱର୍ଗଭୂମି
ହସଇ ଯହିଁ ଅଭ୍ର ଚୁମି
ଚନ୍ଦ୍ର ତାରା ସୂରୁଯ
ପୁରୁଣା ସେହି ପରାଚୀ ତଳେ
ଅରୁଣ ରଥେ ତପନ ଚଳେ
ବିଛାଡ଼ି ନାଲି ମୁରୁଜ ।

ଲୋଡ଼େ ନାହିଁ ମୁଁ ଉର୍ବଶୀର
ସୁଷମା ଚାରୁ ନର୍ତ୍ତକୀର
କଣ୍ଠେ ଗୀତି ଲହର
ପଲ୍ଲବିତ ବକୁଳ ବନେ
କୋକିଳବଧୂ ଅଳସ ଗାନେ
ଚିର ନାଚେ ମୋହର ।

ସୁଖ ମୁଁ ତାରେ ନାହିଁ ଗୋ ମଣେ
ବିଳସିବାକୁ ସ୍ୱର୍ଗାସନେ
ପାରିଜାତର ତଳପ
ଚାହେଁ ମୁଁ ଧରା ଦୂର୍ବାଦଳେ
ଆସନ ପାତି ଜ୍ୟୋଛନା ତଳେ
ନିଦ ଯିବାକୁ ଅଳପ ।

ମରତେ ଚାହେଁ ଶରତ ଶୋଭା
ଭାବୁକ କବି- ମାନସଲୋଭା
ଧବଳ କାଶତଣ୍ଡୀ

ଚାହେଁ ନା ପାରି- ଛାତକ ତୋଳି
ମଳୟ ଯହିଁ ଖେଳଇ ଦୋଳି
ପରାଗେ ମୁଖ ମଣ୍ଡି ।

ଲୋଡ଼େ ନାହିଁ ମୁଁ କଳନାଦିନୀ
ନୃତ୍ୟଶୀଳା ମନ୍ଦାକିନୀ
ଦଗ୍‌ଧ ରୂପାବରଣା
ଚାହେଁ ମୁଁ ନୀଳ ଶଇଳ ତଳେ
ହାରଟି ସମ ଧରଣୀ ଗଳେ
ଶୋଭଇ ଯେଉଁ ଝରଣା ।

ନାହିଁ ମୁଁ ଲୋଡ଼େ ମରତେ ଭୁଲି
ନନ୍ଦନରେ ନିୟତ ବୁଲି
ତୋଳିବା ପାରିଜାତ ଗୋ ।
ଇଚ୍ଛେ ଚୋରା ଚଇତ ବୁକେ
ପ୍ରଭାତ ସଜ ଗୋଲାପ ମୁଖେ
ଶିଶିରକଣାପାତ ଗୋ ।

ଧରାରେ ଚାହିଁ ଭୋଦେଇ ରାସ
ଯେ ମୁଦେ ମାତେ କଅଁଳ ଘାସ
ଅଧୀରେ ଶୋଭା ରଚନେ
ମୋ ମତେ ନାହିଁ ସରଗ କୋଳେ
ସେ ଶୋଭା ପରୀ- ଚପଳ ଡୋଳେ
ସେ ମୁଦ ତାର ବଚନେ ।

ଏଇ ମୋ ମାଟି- ମରତ ଘରେ
ଯାପିବି ଭୂମି- ତଳପ ପରେ
ସ୍ୱପ୍ନମୟୀ ଯାମିନୀ

ଚାହେଁ ନା ବୁଲି ବାରିଦମାଳେ
ଦେଖିବି ପରୀ- ଚନ୍ଦ୍ରଶାଳେ
ରସିକା କୋଟି କାମିନୀ ।

ସନ୍ଧ୍ୟା ପ୍ରାତ ଚାନ୍ଦ ରବି
ଦିବସ ଆଉ ଯାମିନୀ ଛବି
ଷଡ଼ଋତୁର ବିଳାସ
ସିନ୍ଧୁ ଝର ସରିତ ଗାନ
ଯିବାକୁ ଆହା ଛାଡ଼ି ଏ ମାନ
ଟିକେ ମୋ ନାହିଁ ମାନସ ।

ଲୋଡ଼େ ନା ଟିକେ ସେ ଦେଶ ମୁହିଁ
ଡାକେ ନା ମାତା- ସ୍ନେହ ଯେ ଭୁଇଁ
ବଧୂର ପ୍ରେମ-ଅରଘ
ଛାଡ଼ି ଏ ମଧୁ- ବିଶ୍ୱ-ଘର
କି ଲୋଡ଼ା ଅବା ସେ ଦେଶେ ମୋର
ଏ ଯେ ମୋ ସାତ ସରଗ !

❒ ❒

# ବିଳାସୀ କବି

ହେ ବିଳାସୀ କବି କେତେ ତ ବୁଲିଲ
ସପନ-ରାଇଜ ପାରେ
ପଡ଼ିଲା ନାହିଁ ତ ଥରେ ତବ ଆଖି
କେବେ ବାସ୍ତବ ଠାରେ ?

ଦେଖିଲ ତ କେତେ ଧରଣୀ-ବକ୍ଷେ
ନଗ୍ନ ଜୋଛନା ହାସ

ଅରୁଣ-ଅଧରୀ ଦେଖାଇଲେ ଯେତେ
ମାଧବୀ କୁଞ୍ଜେ ରାସ ।

ସ୍ୱପ୍ନ ରାଇଜ୍ୟେ ମାନସ ନିବେଶି
କୁହୁକ ତନ୍ଦ୍ରା ଭୋଳେ
ରହିଲ ତ ଶୋଇ ସ୍ୱର୍ଣ୍ଣ ସଉଧେ
ପୁଷ୍ପ ତଳପ କୋଳେ ।

ଦେଖିଲ ନାହିଁ ତ ଥରେ ହେଲେ କବି
ଭଙ୍ଗା କୁଟୀରେ ପଡ଼ି
ଥରଇ କେସନେ ଅନାଥା ବୃଦ୍ଧା
ପୌଷର ଜାଡ଼େ ସଢ଼ି ।
ସେବିଲ ତ କେତେ ମଦିର ମଳୟ
ହେନା ବକୁଳର ବାସ
ଶୁଣିଲ କି କେବେ ଝରା ବଧୂଲିର
ବିଧୁର ଦୀର୍ଘ ଶ୍ୱାସ ?

ଦେଖିଲ ତ କେତେ ଆଶାୟୀ ସପନ
ରୂପସୀ ପଣତ ତଳେ
କନକିତ ଯାର ସୁଷମ ଗଣ୍ଡେ
ହାସର ଦୀପ୍ତି ଝଳେ ।

ହେ ବିଳାସୀ କବି ଦୃଷ୍ଟି ଫେରାଇ
ଥରେ ତ ଚାହିଁଲ ନାହିଁ
ପତିହୀନା ବାଳା- ବକ୍ଷ କେସନେ
କରେ ସଦା ହାଇ-ହାଇ ।

ଦେଖିଲ ତ କେତେ ଶ୍ୟାମଳ ଘାସର
କୌମୁଦୀ-ସ୍ନାତ ମୁହଁ
ଦେଖିଛ କି କେବେ ଲକ୍ଷ ଆଖିର
ଦକ୍ଷ ଭସାଣ ସୁଅ ?

ଏ ପାଖ ଆକାଶେ ଫୁଟି ତ ଉଠିଛି
ଶାରଦ ପଞ୍ଚଦଶୀ
ଆର ପଟେ ତାର ଦେଖି ପାରୁଛ କି
ନିବିଡ଼ ତାମସ ମସୀ ?

ଶୁଣିଲ ତ କେତେ କୋକିଳକୂଜନ
ବକୁଳ କୁଞ୍ଜାଗାରେ
କୁରରୀର ଏ ଯେ କରୁଣ ବିଳାପ
ଛୁଏଁ କି ମରମ ବାରେ ?

ସାତ ସମୁଦର ତେର ନଈ ପାରେ
ବୁଲି ତ ଆସିଲ କବି
ସବୁ ରାଇଜରେ ଦେଖିଲ କି ଖାଲି
ବିଳାସର ଚାରୁ ଛବି ?

ଚୋରା ଚଇତାଳି ଚପଳ ବିଳାସେ
ଭାସିଲେ କି ହେବ କବି
ନ ଫୁଟିଲା ଯେବେ ଲେଖନୀରେ ତବ
ବ୍ୟଥାର କରୁଣ ଛବି ?

□ □

## ମଶାଣି ସ୍ମୃତି

ଏଇ ଯେ ଶାଗୁଆ ତାଳବନ ରେଖା
ଦିଗ୍‌ବଳୟରେ ଯାଇଛି ମିଶି
ଅସ୍ତ ତପନ ପଡ଼ଇ ଖସି
ନିଇତି ଯା ତଳେ ଅବିର ବିଛାଡ଼ି
ବାହୁଡ଼େ ପ୍ରଦୋଷ ପଲକ ପିଛାଡ଼ି

ସେହି ମୋ ଗାଆଁର ଅନ୍ତିମ ଶେଯ
ଗଦା ଗଦା ମଡ଼ା କୋକେଇ ଆସି
ଏଇ ମାଟି ତଳେ ଯାଇଛି ମିଶି ।

ଝାଉଁଗଛ ଗୋଟା ଆଗରେ ଯେ ଦିଶେ
ତିଖେ ବସେ ତାର ଶକୁନି ସଭା
ଜଳେ ଜୁଇ ଜିଣି ରକତ ଜବା
ପାଖେ ତାର ଯେବେ ବଜାଏ ବିଲୁଆ
ନିଶାର ନାଗରା "ହୁକା-ହୁକା-ହୁଆ"
ମଶାଣିର ସେହି ନଗ୍ନ ଉରସ
ଦାବି କରି ବସେ ଏ ଦେହ ଅବା
ଦେହେ ନିଭୁ ନିଭୁ ତରୁଣ ପ୍ରଭା ।

ନିୟତି ନିଦେଶେ ଏଇ ଦେହ ଗୋଟା
ଖାଇବ ରୁଦ୍ର ମଶାଣି ଜୁଇ
ମୃତ୍ୟୁର କାଠି ଦେଲେଟି ଛୁଇଁ
ମଣିଷ ପାଉଁଶ ଚେଇଁ ଅଛି ଆଜି
ମଶାଣିର ଏଇ ଶ୍ୟାମ ଦୂବ ସାଜି
କେତେ ଲୁହଭାରେ ଯାଇଛି ବତୁରି
ଜନହୀନ ଏଇ ଅରାକ ଭୂଇଁ
ସ୍ମୃତିରେ ଏ ପ୍ରାଣ ଦେବାକୁ ଦୁହିଁ ।

ଏଇ ମଶାଣିରେ ତାରାଲୋକପରି
ଲକ୍ଷ ଜୀବନ-ମଶାଲ ଜଳେ
ଯା ଧୂମ ଉଠଇ ନଭସ ତଳେ
ବୁଡ଼ଇ ଯେଉଁଠି ଏ ଦେହ-ତପନ
ଦେଖିବି ତା କୋଳେ ମୁକ୍ତି-ସପନ
ସେ ତ ମୋ ଜୀବନ- ଅନ୍ତିମ ପୀଠ
ମିଶିଯିବ ଦିନେ ତା ମାଟିତଳେ
କିଏ ସେ ମୋ ପଥ ରୋଧିବ ବଳେ ?

□ □

# କଲିକତା କୁଲି

ଆରେ କଲିକତା କୁଲି
ତିନି ଦିନେ ଆଜି ଓଳିଏ ତୋହର
କୁଟୀରେ ନ ଜଳେ ଚୁଲି ।
ପରବାସେ ଥାଇ ହେ ମୂଲିଆ ଭାଇ
ପଛକୁ ଟିକିଏ ଅନା
କଙ୍କାଳସାର ପରିବାର ତୋର
ପେଟେ ଦିଏ ଓଦା କନା ।
ବସିଛି ତୋହର ବିଧବା ଜନନୀ
ଚାହିଁ ଡାକବାଲା ବାଟ
ବାଢ଼ିବ କେସନେ ସନ୍ତାନେ ତାର
ଅଲଣା ପଖାଳ ଭାତ୍ !
ସାତ ପୁରୁଷର ପୁରୁଣା ଅମାର
ପଡ଼ିଛି ତୋ ଆଜି ଖାଲି
ନିଜ ଘର ଭୁଲି ପର ଘର ଭରୁ
ଜାଣୁକି କି ହେବ କାଲି ?
ଗୁହାଳେ ତୋହର ସଞ୍ଜେ ତ ଆଉ
ଶୁଭୁନି ଗୋଧନ ରଡ଼ି
ଉର୍ବର କ୍ଷେତ ଉଜାଡ଼ି ଦେଇଛି
ଅଶୁଣା ଅକ୍ଷିଣା ବଢ଼ି ।
ବାପ ଗୋସିବାପ ଓଲଟାଇ ମାଟି
ପାଲଟାଉଥିଲେ ସୁନା
ସାରିଲୁ ତୁ ସବୁ ହୋଇ କୁଲିବାବୁ
କାନ୍ଥ ତୋ ମାରେ ଲୁଣା ।

ଖଜଣା ପାଇଁକି ସରକାର ଘର
କେବଲାଇ ତୁହା ତୁହା
ହେଲାଣି ଏଥର ନିଲାମ ଧମକ
ନ ଶୁଣି କାହାରି କୁହା ।
ଚାରି ମଉଜାରେ ନାଆଁ ଡାକ ତୋର
ଦୁଆରେ ନମିଲେ ଭିକ
ଭିକାରି ତୁ ଆଜି ପର ଦେଶେ ପଶି
ଧିକ ତୋ ଜୀବନ ଧିକ !
ଅଛୁଆଁ ମଥାନୁଁ ଖସେ ରୁଅ ବତା
ବତାସେ ଛପର ଉଡ଼େ
ଝଡ଼ି ବରଷାର ଖରା ମେଘ ଧାରେ
ଘର ତୋର ନିତି ବୁଡ଼େ ।
ଟିକିପୁଅ ଘରେ ପଡ଼ି ପାଲିଙ୍କରେ
ହେଲାଣି କତରାଲଗା
ପଇସା ନ ପାଇ ବଇଦ କହଇ
'ଦୁସୁରା ବଇଦ ଲଗା ।'
ଆଣିଅଛି ଗୁଆ– ଚିଟାଉ ବାରିକ
ମଝିଆଁ ଶଳାର ବାହା
ବେଭାର ନ ଗଲେ ତିନି ପୁରୁଷର
ବୁଡ଼ିଯିବ ଡାକ ନାଆଁ ।
ମୁଣ୍ଡ ଉପରେ ବାପର ଦିବସ
ମରେଇରେ ନାହିଁ ଧାନ
ପଢୁଆଁ ନ କଲେ ଭଣଜାରେ ତେଣେ
ଭଉଣୀର ଯିବ ଟାଣ ।
ଦୁଆରେ ତୋହର ପିଆଦା ବସିଛି
ଦେଖାଇ ରକତ ଆଖି
ସାହୁକାର ଘର ଦେଏଣା ସେ କହେ
ନ ରଖିବ ଆଉ ବାକି ।

ଭାଳି ଏଇମାନ ପଥର-ପାଲଟି
ରହିଲେଣି ସବୁ ଘରେ
ନ-କହିଲା-ଲୋକ କହେ ଟାଣକଥା
ମହତ ମାନନା ସରେ ।
ସହି ହେବ ନାହିଁ ଆଉ ଏତେ ଦାଉ
ନ ବୁଝିଲୁ ତୁହି କିଛି
ବନ୍ଧୁ ପଡ଼ୋଶୀ ସକଳେ ଯେ ତତେ
କଲେଣି କେବଳ ଛି-ଛି ।
ଆସି ଥରେ ଭଲା ଦେଖିଯା ତୋହର
ଜମିବାଡ଼ି ଘରଦ୍ୱାର
ଅଯୋଗାପଣରୁ ସିନା ତୋର ଭାଇ
ହେଲା ସବୁ ନାରଖାର ।
କହ କଲିକତା କୁଲି
କି ସପନ ଦେଖି କି ମୋହରେ ପଡ଼ି
ରହିଛୁ ତୋ ଗାଆଁ ଭୁଲି ?

❐ ❐

# ପଲ୍ଲୀ ଓ ନଗର

ଚଞ୍ଚଳା ନଈ ବହିଯାଏ ଯହିଁ
ଭଉଁରୀ ବିକାସେ ମାତି
ଉପକଣ୍ଠେ ତା ହସିଉଠେ ମୋର
ଗାଆଁର ଶ୍ୟାମଳ ଛାତି ।

ପୋରୁହାଁ ସୂରୁଯ ବୁଣି ଦେଉଁ ଦେଉଁ
ତୀରେ ତା କଅଁଳ ଖରା
ହସି ଉଠେ ଗାଆଁ ନୀଳିମା ଗୋଚର
ହସି ଉଠେ ବାଲିଚରା ।

ପୂରୁବ ପଟର ପୀତ ଝରଝର
ଫୁଟିଲା ସୋରିଷ କ୍ଷେତ
ଗନ୍ଧ-ବିଧୁର ମନ୍ଦ ଅନିଳେ
ଉଡ଼ାଏ କନକ ନେତ ।

ଊର୍ଦ୍ଧ୍ୱ ନୟନେ ନୀଳ ପରବତ
ବନର ଛଇଳ ଘର
ମୁକୁଳା ଗଗନେ ମେଲାଇ ଦେଇଛି
ଲମ୍ବିତ ଶତ କର ।

ସେ ଛବି ସପନ ନଗରୀର ଶତ
କୃତ୍ରିମ ଆବରଣେ
ରକ୍ତିମ ତାର ଊଷର ପଥର
ଧୂସର ବାଲୁକା କଣେ ।

ଇଷ୍ଟକ ଗଢ଼ା ଉଚ୍ଚ ତାହାର
ଶୁଭ୍ର ସଉଧମାଳା
ଝୋଟିଚିତା ଆଉ ଲେଖି ନାହିଁ ତହିଁ
ସରଳା ପଲ୍ଲୀବାଳା ।

ଫୁଟାଇ ଦେଇଛି ଶିଳ୍ପୀ ଯେ ତହିଁ
ରଙ୍ଗ ତୂଳିକା ଗାରେ
କଳ୍ପନାରୁ ତା ପ୍ରସବି ସକଳ
ସୌଷ୍ଠବ ଏକାଧାରେ ।

ସପନ ଯେ ତହିଁ ଶସ୍ୟ ପୂରିତ
ପୁଣ୍ୟ ମାଟିର ଘର
ପୂନିଅଁ ପରବ ଓଷା ବ୍ରତେ ଯହିଁ
ଆମୋଦେ ନ ସହେ ତର ।

ପଲ୍ଲୀ ଯୋଷାର କୃଷ୍ଣ ବେଣୀଟି
ନ ଶୋହେ ଚରମ ଭାଗେ
ନାଗରିକା ସମ ବଦନଟି ପୁଣି
ସ୍ନିଗ୍ଧ ପରାଗ ରାଗେ ।

ନୀରଦ ଚିକୁରେ ଶୋଭେ ମଞ୍ଜୁଳ
ପୁଷ୍ପ ଭୂଷିତଗଭା
କନକିତ ତାର କମ୍ର ନିଟିଳେ
ହସଇ ଇନ୍ଦୁ ପ୍ରଭା ।

ସ୍ୱେଦ ମୁକ୍ତିତ ଚୂର୍ଣ୍ଣ ଅଳକ
ଅବଗୁଣ୍ଠନ ତଳେ
ହିମ-ଚୁମ୍ବିତ ଦୂର୍ବା ସମାନ
ସରମାକିରଣେ ଝଳେ ।

ନଗରୀରେ ପଢ଼ି ହେଉ ନାହିଁ ଭୁଲି
ଗାଆଁ ପାଠଶାଳା ବାଟ
ଧୋତି-ପରିହିତ ଅବଧାନ ଶିଖା
ପାହି ପଣିକିଆ ପାଠ ।

ଭୁଲି ହେଉ ନାହିଁ ପାଠାଗାରେ ଏତେ
କାବ୍ୟ କବିତା ଭରି
"କଳା କଳେବର କହ୍ନାଇ" ଅବା
"କମଳଲୋଚନ ହରି" ।

ସେ ପାଖେ ଉଠଇ ଧୂମ-କୁଣ୍ଡଳୀ
ଯନ୍ତ୍ର-ଦାନବ-ବୁକୁଁ
ଏ ପାଖେ ଫୁଟଇ ବିହଗର ଗାନ
କୁଞ୍ଜବଧୂର ମୁଖୁଁ ।

ସେ ପଟେ ଦିଶଇ ନଗରୀ ପଥର
ପଙ୍କିଳ ନରଦମା
ଏ ପଟେ ମୋହର ଶ୍ୟାମଳା ପଲ୍ଲୀ
ସୁନ୍ଦରୀ ମନୋରମା ।



# କବିର ଭଗବାନ

ବିଶ୍ୱର ମୁଁ ନିଃସ୍ୱ କବି
ଦେଖଇ ତବ ମଧୁର ଛବି
ଯେ ଛବି ନାଚେ ଲହରୀରୂପେ ଜଳେ
ଯେ ଛବି ଫୁଟେ ସଂଧ୍ୟା ପ୍ରାତେ
ଅସୀମ ଏଇ ଆକାଶ-ଛାତେ
ଯେ ହାସ ଫୁଟେ ବିକଚ ଶତଦଳେ ।
ଚିନ୍ତା ଯେବେ ଲେଖନୀ ଚାହେଁ
କ୍ଷମା ମମ ମାନସ ଧାଏଁ
ସାତ ସାଗର ତେର ନଈର ପାରେ
କଣ୍ଠେ ଶତ ଛନ୍ଦ ଆସି
ଭେଟଇ ଯେତେ ଉପମାରାଶି
ନ ପାରେ ମୁହିଁ ସଞ୍ଚି ମୁନ ଧାରେ ।

କାହିଁ ମୁଁ ଆଉ ପାଏନା ବେଳ
ମରମେ ବାଜେ ବ୍ୟଥାର ଶେଳ
କ୍ଷୁଦ୍ର ମମ ପରିବାରଟି ଧରି
ଘରର ଯେତେ ଯା ଅନଟନ
ପଣ୍ଡ କରେ ସବୁ ଧିଆନ
ଲେଖନୀ ମୁନୁଁ ମସୀ ନ ଆସୁଁ ଝରି ।

ନୟନ-ନିଧି ଦେଲ ହେ ଯାହା
ଚଳାଇବାରେ ପରାଣ ନାହା
ଚିନ୍ତା-ଜଳେ ହୋଇଲି ନିମଗନ
ଏଇ ଜନମ ପୂର୍ବ ତଟେ
ବିହିଥିଲ ଯେ ଆଦେଶ ମତେ
ପାସୋରିଛି ତା ଆଜି ଏ ଅଭାଜନ ।

କଣ୍ଠେ-ମୁହିଁ ନ ପାଏଁ ଭାଷା
ସ୍ତୋତ୍ର ଗାନେ ଭରିବି ଆଶା
ସପନ ପୁଣି ପୂଜନ ଉପଚାର
ଧିଆନେ ତବ ରହିଲେ ବୁଡ଼ି
ଚପଳ ମନ ପଳାଏ ଉଡ଼ି
କେସନ ହେବି ପାତ୍ର କରୁଣାର ?

ଅଦେହ କେଉଁ ମାୟାବୀ ସରି
ବିଶ୍ୱ ମୁଖେ ଦେଇଚ ଭରି
ଚିତ୍ର ସମ ମଉନ ଦରହାସ ।
ଅକ୍ଷମ ମୁଁ ଅଧମ କବି
କରିବାରେ ସେ ଅରୂପ ଛବି
ଲେଖନୀ ମୁନେ ନିତ୍ୟ ପରକାଶ ।

ଚିର ନୂତନ ଶୋଭାରେ ତବ
ଛନ୍ଦ ଢାଳି ମୁଁ ଅଭିନବ
ଚରଣେ ତବ କରେ ଯେ ଅରପଣ
ଯେ ଫୁଲ ଫୁଟେ ମାନସ ଭୂମେ
ସେହି କବିତା ଅରଘେ ତୁମେ
ତୁଷ୍ଟ ନିକି ନ ହୁଅ ଭଗବାନ ?

❑ ❑

# ସ୍ୱାଗତ

ପୁଷ୍ପ-ତଳପ ଛାଡ଼ି ଉଠିଆସ କବି
ତୁମକୁ ଡାକୁଚି ନୂଆ ଫଗୁଣର
ସ୍ନିଗ୍ଧ ଗୋଲାପୀ ଛବି
ଡାକୁଚି ଗନ୍ଧ ବକୁଳ ଚମ୍ପା ମଲ୍ଲୀ
ପ୍ରଭାତ ଅନିଳେ ଦୋହଲି ଡାକଇ ବଲ୍ଲୀ
ମଧୁମାଳତୀର ମଞ୍ଜରୀ ଡାକେ ନଇଁ–
"ହେ ନୀରବ କବି ଲେଖନୀ ଅୟସେ
ଆଙ୍କିଯାଅ ମୋ ଛଇ ।"

ତୁହାଇ ତୁହାଇ ଫୁଲେଇ କୋଇଲି ଡାକେ
"ଆସ ସଖା ଏଇ ସହକାର ବନ ପାଖେ ।"
କଜଳପତ୍ରୀ ସ୍ୱାଗତ ଗୀତିକା ଢାଳେ
ହସି ହସି ଦୂରୁଁ ବଉଳ କୁହାଟେ
ବନାନୀ ଅନ୍ତରାଳେ–
"ଜାଗ ହେ ବିଳାସୀ କବି
ଆଖି ମେଲି ଚାହଁ ଖେଳିବୁଲେ ନଭେ
କନକ କାଉଁରୀ ଛବି ।"

ଆଜି, ପୂବେଇ ପବନେ ଭାସିଆସେ କେଉଁ ଦୂରୁଁ
ବଂଶୀର ତାନ ଦରଦୀ ପ୍ରଣୟପୁରୁଁ
ଶୁଣଇ ଖାଲି ଯା ଉଷାର ନିର୍ଜନ ପଥ–
"ଚାହଁ ଚାହଁ ଏ ଯେ ଭାସି ଆସେ ମେଘେ
ଅରୁଣର ଦୋଳ-ରଥ ।"

ବିଶ୍ୱରେ ଦେଖି ଫଗୁଖେଳ ମତୁଆରା
ଝରେ ଅମ୍ବରୁ ଫଗୁଳ ଆଲୁଅ ଧାରା
ବନେ ଦେଖି ସେଇ ରଙ୍ଗ ଉକୁଟା ଛଇ
ପ୍ରିୟ ଆଶେ ଝରା          କିଂଶୁକଦଳେ
ଆସନ ପାରିଛି ମହୀ ।

ଚୋରା ଏ ମଳୟ ଛପି ଛପି ଆସେ ହସି
ଶିରେ ତାର ଶତ ଚମ୍ପା କେତକୀ ଖୋସି
ଅଳସ ଚନ୍ଦ୍ର ଦୂର ବନ ତଳେ ତଳେ
ତୁମରି ବିରହେ          ମୁହଁଟି ଶୁଖାଇ
ପୁରମୁଖେ ଧୀରେ ଚଳେ ।

ଚଇତର କାନେ          ନିଦାଘ ବାରତା
ଦେଲେଟି ଝଞ୍ଜା ଚାର
ଢାଳିଯିବ ଶ୍ୟାମ          ବୈଭବେ ସେ ତ
ବିଦାୟର ହାହାକାର
ରହିବ ନାହିଁ ତ ଆଉ ଏ ମାଧବୀ ରାତି
ନିଶୀଥ ସପନେ          ସେଇ କଥା ଭାଳି
କୋରି ହୁଏ ଫୁଲ-ଛାତି
ଦେଖ କବି ଏ ଯେ କୁହୁଳଇ ଗିରି-ହିଆ
ଚଣ୍ଡ ବତାସେ ଜଳେ ଦାଉ ଦାଉ ନିଆଁ
ବିଜନ ଅଟବୀ-          ଗହଳେ କୋକିଳ
ଭାଷଇ କୋକିଳା ସହ
''ଫଗୁଣ ତ ଗଲା—          କବି, ଏବେ ତୁମେ
ଦୂରେ ରହ—ଦୂରେ ରହ ।''

ହେ ତରୁଣ କବି ଚଉପାଶେ ଦେଖ ଚାହିଁ
କାନନ କେସନ          ଖର ନିଃଶ୍ୱାସେ
କରି ଉଠେ ହାଇ-ହାଇ

ଉନ୍ମଦ ମଦେ ମାରେ ବୈଶାଖ ଡାଳି
ତରୁଲତା-ଶିରେ ଦହକ-ଗରଳ ଢାଳି
ରୁଗ୍‌ଣ ପାଲଟେ କୁସୁମଶୋଭନା ଧରା
ରଜତ ଦାବର ବିଲୋଳ ରସନା
ମହୀ କରେ ବାଲୁଚରା ।

ବସନ୍ତ ଏବେ ପୁରେ ତା ବାହୁଡ଼ିଯାଏ
ଆକୁଳ ମଳୟ ବିକଳ କୁସୁମେ ଚାହେଁ
କାନନେ କୋକିଳ ତେଜଇ ତୀବ୍ର ଶ୍ୱାସ
ବିଶ୍ୱ ଡାକେ "ହେ ବିରହୀ ବନ୍ଧୁ
ଫେରିଆସ...ଫେରିଆସ !"



# ମିଳନରାଗ

ତୁମେ ଓ ମୁହିଁ ପକ୍ଷୀ ଥିଲେଁ
ଏଇ ଜନମ ପୂର୍ବ ତଟେ
ଛଇଳ ଏକ ପଲ୍ଲୀଗ୍ରାମେ
ନିରମି ନୀଡ଼ ଜୀର୍ଣ୍ଣ ବଟେ ।

ଦୋଳାୟମାନ କୁଳାୟ ବୁକେ
ଚଞ୍ଚୁ ପରେ ଚଞ୍ଚୁ ରଖି
ଚନ୍ଦ୍ରାଲୋକେ କି ସୁଖେ ଆମେ
ସ୍ୱପ୍ନେ ବୁଡ଼ି ଥିଲେଁଟି ସଖି ।

ଦିନେକ ଯେବେ ଉଆଁସୀ ନଭେ
ନିଠୁର ଝଡ଼ ଉଠିଲା ମାତି
ନୀଡ଼ଟି ଆମ ଭାଙ୍ଗି ପଡୁ
ଚମକି ମୋରେ ଡାକିଲ ସାଥି ।

ବତାସେ ଯେତେ ଉତରିଲି
ଉଠାଇ କୋହ—ଝରାଇ ପାଣି
ତାମସୀ ବୁକେ ଗଲ ଯେ ହଜି
ନ ପାରି ଶୁଣି ମୋ ଡାକ ରାଣି ।

ସେଇ ନିଶୀଥେ ବିହଗକୁଳୁଁ
ଚିର ମେଲାଣି ନେଇ ଗୋ ଆମେ
ଆବର ଦିନେ ନୂଆ ଜନମେ
ମୂର୍ତ୍ତ ହେଲେ କୁମୁଦ ନାମେ ।

ଗତ ଜୀବନ-ପ୍ରଣୟ ସୁଖ
ପରାଣ ଭରି ଭୋଗିବା ପାଇଁ
ଶାନ୍ତ ସରେ ରଚିଲେଁ ବାସ
ଝଡ଼ର ଯହିଁ ଶଂକା ନାହିଁ ।

ମନ୍ଦ ବାତେ ଦୋହଲି ପୁଣି
ରହିଲେଁ ଲାଗି ପାଖକୁ ପାଖ
ଯେସନେ ଆମେ ପାରିବା ଶୁଣି
ଉଭୟ ମୁଖୁଁ ଉଭୟେ ଡାକ ।

ଶୁଭ୍ର ଚାରୁ ଜୋନ୍ହଅ ରାତେ
ଚନ୍ଦ୍ରିକାର ବିତାନ ତଳେ
ହସିଲେଁ ଆମେ ଦୁଇଟି କଇଁ
ଚିତ୍ର ସମ ସରସୀଜଳେ ।

ପ୍ରଭାତେ ଏକ ପଲ୍ଲୀ ବଧୂ
ଦେବତାପାଦେ ଭେଟିବା ଲାଗି
କୋମଳ କରେ ପରଶି ତନୁ
ତନ୍ଦ୍ରା ଆମ ଦେଲାଟି ଭାଙ୍ଗି ।

ମାଟିର ଘର ଦେହଳୀ ତଳେ
ଆପଣା ରୂପସୋହାଗେ ମାତି

ନୟନ ପରେ ନୟନ ଢାଳି
ଛନ୍ଦି ହେଲେଁ ଫୁଲାଇ ଛାତି ।

ରଙ୍ଗ ଢାଳି ସଞ୍ଜବାଳୀ
ଧରାରେ ପାଦ ପକାଉଁ ଥିରି
ସ୍ତିମିତ କ୍ଷୀଣ ପ୍ରଦୀପ ସମ
ଚେତନା ଆମ ଆସିଲା ମରି ।

ସେ ଦିନୁଁ ଆଉ ଦେଖିନି ବାରେ
ସପନେ ତୁମ ରୂପର ଛାଇ
ଆଉ କି ସଖି, ଭାବୀ ଜନମେ
ମିଳନ ଆମ ଘଟିବ ନାହିଁ !!

❑ ❑

## କବିପ୍ରେୟସୀ

ଜାଣ କି ଗୋ ପାଏଁ ଭଲ
କେସନେ ମୁଁ ତୁମରେ
କେସନେ ମୁଁ ରୂପ ତବ
ଦିବା ନିଶି ସୁମରେ ।

ଅରୂପ ପରଶ ତୁମ
କି ମଧୁର ମାଦକ
କରିଛି ସେ କବି ମୋରେ
କରିଛି ସେ ସାଧକ ।

କଳପନା ତଳେ ଦେବି !
ହେଲେ ତବ ଉଦୟ
ଶିରାବଣ ନଈ ସମ
ଫୁଲେ ମମ ହୃଦୟ ।

ଇଙ୍ଗିତେ ଯାହା ତୁମେ
ଦେଇଛ ଗୋ ସୂଚାଇ
ଭୁଲି କି ମୁଁ ପାରିବି ତା
ମୁଖ ଦେଲେ ଲୁଚାଇ ?

ତୁମେ ଗଲେ ଲୁଚି ସଖି !
ଜୋଛନାର ସଉଧେ
ଖୋଜିବି ମୁଁ ଦିଶିଦିଶି
ଛପି କଳା ବଉଦେ ।

ଗଲେ ତୁମେ ଫଗୁଣର
ଫୁଲବନ ଝରାଇ
ଧାଇଁବି ମୁଁ ମଳୟର
ନିଃଶ୍ୱାସ ଥରାଇ ।

ତାନେ ଯେଉଁ ଇଙ୍ଗିତ
ଫୁଲ ଡୋଳେ ଲତିକା
ମୃଦୁତାନେ ବିହଗଟି
ତୋଳେ ଯେଉଁ ଗୀତିକା ।

ସେହି ତବ ଭ୍ରୂଲୀଳା
ସୁମଧୁର ଗାଥାଣି
ସପନେ ମୁଁ ବାରବାର
ହେଜେ ସେହି କାହାଣୀ ।

ତୁମେ ଯେଉଁ ରାଗ ଢାଳିଯାଅ
ଛପତିର ତୂଳିରେ
ସରଗ ସପନ ଫୁଟେ
ଧରଣୀର ଧୂଳିରେ ।

କବିର ଲେଖନୀ ଧାରେ
ତାଳ ଯେଉଁ ଛନ୍ଦ
ପ୍ରାଣେ ତା' ପୁଲକ ଆଣେ
ଯଥା ଫୁଲ ଗନ୍ଧ ।

ତୁମେ ଯେବେ ବାଅ ବେଣୁ
ବନପଥେ ରାତିରେ
ଫୁଟେ ଝର-ଯଉବନ
ସିକତାର ଛାତିରେ ।

ତୁମେ ମୋର ଚିରସାଥୀ
ଅନ୍ତର-ପୂଜିତା
ଉନ୍ମଦ ହୁଏ ପୁଣି
ପରକ୍ଷଣେ ବୁଝି ତା ।

ତୁମକୁ ଜଗତ କହେ
ମୋ ଜୀବନ-ଶ୍ରେୟସୀ
ନମୋ ନମୋ ବନ୍ଦିତା
ଅୟି କବି-ପ୍ରେୟସି !

□ □

# ପ୍ରତୀକ୍ଷା

ଏଇଥି ଭିତରେ ଦୀର୍ଘ ଗୋଟିଏ
ବରଷ ଯାଇଛି ପାହି
ସଞ୍ଚିତ ଯେତେ ମନ କଥା ମୋର
କହି ପୁଣି କହି ନାହିଁ ।
ଯେତେ ମୁଁ କାହାଣୀ ରଖିଛି ସାଇତି
ସବୁ ସୁନ୍ଦର ନୂଆ
ସବୁଗୁଡ଼ିକ ତ ଅମୃତ ଝରା
ଅଦିନ ମଳୟ ଛୁଆ ।
ତୁମ ପାଇଁ ମୁହିଁ ରଖିଛି ନିଗାଡ଼ି
ଫଗୁଣ ଫୁଲରୁ ମହୁ
ତୁମ ପାଇଁ ମୋର ଚପଳ ଗତିରେ
ବରଷଟା ପାହିଯାଉ ।

ମୁଁ ଗୋ, ଚନ୍ଦ୍ରିକା ଦେହୁଁ ରଖିଛି ଚୋରାଇ
ସ୍ନିଗ୍ଧ ରଜତ ରେଣୁ
ବିହଗ-କୂଜନୁଁ ରଖିଛି ଛଡ଼ାଇ
ବୀଣାନିନ୍ଦିତ ବେଣୁ ।

ରଖିଛି ସାଇତି ଝରା ବରଷାର
ପୁଲକିତ ନୀପ ହାସ
ଶିଶିର-ବତୁରା ଶରତ ନିଶିର
ଶୁଭ୍ର ଶେଫାଳୀ ବାସ ।
କମଳ କାସାରୁଁ ଅମଳ-ବିଭୂତି
ରଖିଛି ତୁମରି ପାଇଁ
ତୁମ ପାଇଁ ମୋର ତୁରିତେ କେସନେ
ବରଷଟା ଯାଉ ପାହି ।

x x x

ବହୁଦିନ ପରେ ଫେରିଛି ମଳୟ
ସୌରଭ ବନେ ଢାଳି
ଏ ପଥେ ସଖି ! ଆସିବ କି ତୁମ
ସ୍ୱର୍ଣ୍ଣ ଚରଣ ଚାଳି ?
ଆଶା-କୋଣାରକ ଗଢ଼ିଛି ମୁଁ ଯାହା
ଦୀର୍ଘ ଦିବସ ଲାଗି
ନିରାଶ ବାରତା ଶୁଣାଇ ଅକାଳେ
ନ ଦେବ ଯେସନେ ଭାଂଗି ।
ତୁମରି ମଧୁର ଦର୍ଶନେ ମମ
ଲିଭିବ ହୃଦୟ ଜ୍ୱାଳା
ସାର୍ଥକ ହେବ ସାଜିବାର ସଖି !
ଏ ମୋର ଅର୍ଘ୍ୟଥାଳା ।

□□

# ମୁଁ ଓ ତୁମେ

ମୁଁ ହେବି ତୁଙ୍ଗ ସୁନାର ଦେଉଳ
ତୁମେ କି ହୋଇବ ଦେବତା
ମୁଁ ହେବି ନଗନ ଉଦାର ଗଗନ
ତୁମେ କି ହେବ ହେ ସବିତା ?

ମୁଁ ହେବି ସବୁଜ ଧରଣୀର ଘାସ
ତୁମେ କି ହୋଇବ ଶିଶିର
ତୁମେ କି ଫୁଟିବ ମୋ ଦେହେ ଚନ୍ଦ୍ର
ମଧୁର କୁଆଁରୀ ନିଶିର ?

ମୁଁ ହେବି ବନର ଚାରୁ ସହକାର
ତୁମେ କି ହୋଇବ ମାଳତୀ
ମୁଁ ହେବି ଗୋଧୂଳି ସୁନାଦୀପେ ମୋତେ
କରିବ କି ତୁମେ ଆଳତି ?

ମୁଁ ହେବି ଶଇଳ ତୁମେ କି ଗୋ ହେବ
କଳରୁତା ମୃଦୁ ଝରଣା
ମୁଁ ହେବି ଶରତ ତୁମେ କି ହୋଇବ
ଶେଫାଳୀ ରଜତବରଣା ?

ମୁଁ ହେବି ନିର୍ଜନ ମାଟି ଶମଶାନ
ତୁମେ କି ମିଶିବ ମୋ କୋଳେ
ମୁଁ ହୋଇବି ଉଷା ତୁମେ ଶୁକତାରା
ଲୁଚିବ କି ମମ ଦୁକୂଳେ ?

□□

## ଦୁର୍ଲଭର ପୂଜା

ସୁନ୍ଦର ସିଏ   ଚିର ସୁନ୍ଦର   ଚିର ମଙ୍ଗଳମୟ
ଶାନ୍ତ ମଧୁର   ମହାଭାସ୍ୱର   ବିଶ୍ୱର ବରାଭୟ ।
ଅସୀମ ତାହାର   ସୃଜନ ତତ୍ତ୍ୱ   ଅଦ୍ଭୁତ ତା'ର ନୀତି
ପଙ୍କେ ଫୁଟାଏ   ପଦ୍ମର ଛବି   ଶୈଳେ ସଲିଳ ଗୀତି ।
ଶୁକ୍ତିରେ ଢାଳେ   ମୁକ୍ତା-ସପନ   ବାରିଦେ ବିଜୁଳି-ହାସ
ନିଃସ୍ୱ କୁଟୀରେ   କରେ ଉଜ୍ଜ୍ୱଳ   ପ୍ରତିଭାର ପରକାଶ ।
ବିରାଟ ତାହାର   ସୃଷ୍ଟି ଗରଭେ   ରହେ ସେ ଅରୂପ ରୂପେ
ଲୋଡ଼େନା ସେ ଆମ   ଶୁଷ୍କ ପୂଜାର   ଫୁଲ ଚନ୍ଦନ ଧୂପେ ।
ପଣ୍ଡିତ ତା'ର   ତଥ୍ୟ ନ ପାଏ   ତର୍କ-ତୋଫାନେ ହଜି
ବିତିଯାଏ ଶତ   ତାପସ ଜୀବନ   ଦିବାନିଶି ଭଜି ଭଜି ।
ନ ଦିଏ ଧରା ସେ   ଗୀତା ଭାଗବତ   ବେଦପାଠ ଉପବାସେ
ନିର୍ମଳ ହୃଦ-   ସରୋବରେ ସିଏ   ସୂର୍ଯ୍ୟ ସମାନ ଭାସେ ।
ପ୍ରେମର-ନିକଷେ   ମାନସ-କନକ   ପରଖିବା ତା'ର କାମ
ଅଯାଚିତେ ଆସି   ମଣ୍ଡଇ ମନ-   ମଣ୍ଡପ ଅଭିରାମ ।
ମର୍ତ୍ତ୍ୟର ଫୁଟା   ସୂର୍ଯ୍ୟମୁଖୀଟି   ସୂର୍ଯ୍ୟରେ ଯଥା ଢଳେ
ସସୀମ ମିଶଇ   ଅସୀମ-ଅଙ୍କେ   ଦୁର୍ଲଭ ପ୍ରେମବଳେ ।

□ □

## ଆହ୍ୱାନ

ଡାକିଛି କେତେ   ସାଗର ତୀରେ
ଡାକିଛି କେତେ କାନନ ପାରେ
ଡାକିଛି ସଖା !   କୁସୁମ ବନେ
ଭସାଇ ବୁକୁ ନୟନ ଧାରେ ।

ଜ୍ୟୋଛନା ରାତେ ଡାକିଛି କେତେ
ମୁକୁଳା ଏଇ ଗଗନେ ଚାହିଁ
କୋଟିଏ ତୁମ କୁସୁମ ମେଳୁଁ
ଗୋଟିଏ ହେଲେ ତୋଳି ମୁଁ ନାହିଁ ।

ତୁମରି ବିନା କୁସୁମ ସଜ
ଅକାଳେ ଗଲା ପବନେ ଝଡ଼ି
ବନବିହଗୀ ତୁମକୁ ଡାକି
କଣ୍ଠ ତା'ର ଯାଇଛି ପଡ଼ି ।

ତୁମରି ପାଇଁ ଶଇଳ ଝର
ବାହୁନି କେତେ ଯାଇଛି ମରି
ଫଗୁଣ ବନ ଗଲାଟି ଶୁଖି
କାନ୍ତହରା ତରୁଣୀ ସରି ।

ବିହୁନେ ତୁମ ମଳୟ ଢାଳେ
ପତର ଫୁଲେ ଲୋତକ-ନୀର
ବିରହେ ତବ ବକୁଳ ବନେ
ହଜିଛି ପିକ କଳିତ ଗୀର ।

ତୁମରି ପାଇଁ ଯାଇଛି ଲୁଚି
ଚକ୍ରବାଳ ସବୁଜ ରେଖା
ଯାଇଛି ନିଭି ସୁନେଲି ଛବି
ସନ୍ଧ୍ୟାବାଳୀ ହସ୍ତଲେଖା ।
ନିଖିଳ ଧରା ତୁମରି ଶୁଭ
ଆଗମନୀର ଆଭାସ ଦେଉଁ
ସ୍ୱାଗତ ଗୀତି ଉଠିବେ ଗାଇ
ଫେନିଳ ନୀଳ ସାଗର ଢେଉ ।

ବିମଳ ଶଶୀ ମାରିବ ତାଳି
ତାରକାଫୁଟା ବିତାନ ତଳେ
ପଖାଳି ଦେବ ଚରଣ ତବ
ସୁମନ-ସଖୀ ଶିଶିର-ଜଳେ ।

ସରସୀରାଣୀ ସପନୁଁ ଉଠି
ଶ୍ରବଣେ ତବ କହିବ କଥା
ତୁମକୁ ଦେଖି ଆବେଗେ ନାଚି
ଉଠିବେ ବନ ବିଟପୀଲତା ।

ବିହଗ କାହିଁ ଶାଖାର ଦାଢ଼େ
ସରଣୀ ତବ ରହିବ ଚାହିଁ
ଝରଣା-ବାଳା ଶଇଳ କୋଳେ
ବନ୍ଦନିକା ଉଠିବ ଗାଇ ।

ଚଇତି ବନ ଜାଗିବ ମୋଦେ
ମଳୟେ ମଧୁ ଆମୋଦ ଭରି
ମଞ୍ଜରିତ କୁଞ୍ଜେ ପିକ
କୂଜିବ ଖିଳ ମାନସ ହରି ।
ଆନତ ମୁଖେ ଡାକିବ ଉଷା
ଅଧରପୁଟୁଁ ନିଗାଡ଼ି ହାସ
କଅଁଳ କରି ରଚିବ ପଥ
ଶିଶିର-ଧୂଆ ସବୁଜ ଘାସ ।

ଆଶିଷ-ରେଣୁ ନେବ ଏ ଧରା
ହରଷେ ତୁମ ଯୁଗଳ ପଦୁଁ
ଗାଇବ ତୁମ ଅମର ଗୀତି
କାସାରେ ସଜ ସରୋଜବଧୂ ।

□□

## ବର୍ଷାସ୍ମୃତି

ଝର-ଝର ଝରେ ପାଗଳ ବରଷା
କଜ୍ଜଳ-କଳା ଗଗନେ
ଶମ୍ପା-ଶୋଭନା ଉତ୍ତରୀ ତାର
ଦୋଳେ ମତୁଆଲା ପବନେ

ଝିଲ୍ଲୀ-ମୁଖରା ଘନ ବିଭାବରୀ
ଦମ୍ଭୋଳି ରୋଳେ ଉଠେ ଥରି ଥରି
କେଉଁ ନିଃସ୍ୱର କାତର ବାହୁନା
ଭାସିଆସେ ଏଇ ପବନେ
ଝର-ଝର ଝରେ ପାଗଳ ବରଷା
କଜ୍ଜଳ-କଳା ଗଗନେ ।

ଗଭୀର ଆଜି ଏ ନିଶୀଥିନୀ କୋଳେ
ଲକ୍ଷ ଭାବନା ଜାଗଇ
ଶୀତଳ ଶୀକର ମୁକୁତା ସମାନ
କପୋଳେ ଆସି ମୋ ଲାଗଇ
ନିର୍ଜ୍ଜନ ପୁରେ ପ୍ରଦୀପଟି ଜାଳି
ଝର-ଝର ତାନେ ରହେ ସ୍ମୃତି ଢାଳି
ଦୂର ଅତୀତର କରୁଣ କାହାଣୀ
ବିଦାୟ ଯେସନେ ମାଗଇ
ଗଭୀର ଆଜି ଏ ନିଶୀଥିନୀ କୋଳେ
ଲକ୍ଷ ଭାବନା ଜାଗଇ ।

ଏଇପରି ଦିନେ ସଘନ ଗଗନେ
ଦେଖି ଦେଖି ଚଳା ବଉଦ
ଗଢ଼ି ବସିଥିଲି ତରୁଣ ଖିଆଲେ
ଆଶାର ସପନ-ସଉଧ
ଉନ୍ମଦ ମୋର କରିଥିଲା ମତି
ଅଜଣା ଫୁଲର ବାସିତ ମିନତି
ଆବର ବେତାଳ ବାରିପତନର
ଝୁମୁରୁ ଝୁମୁରୁ ବାଇଦ
ବୁଣିଥିଲି ଦିନେ କଳ୍ପନା-ଜାଲ
ଦେଖି ଦେଖି ଏଇ ବଉଦ ।

ଦରଭୁଲା କେଉଁ ଅତୀତ ଗୀତିର
ମୋହନ ମଦିର ଛନ୍ଦ

ସ୍ମୃତିରେ ଜଗାଏ ଯୂଥିକାର ଏଇ
ମୌନ ଆକୁଳ ଗନ୍ଧ
ନିଶୀଥର ଘନ ଘୋର ଅନ୍ଧାରେ
ଦିଶିଯାଏ କାର ମୁଖ ବାରେ ବାରେ
ଏସନ ଲଗନେ ଆହ୍ୱାନ ଯାର
କରିଥିଲା ମୋରେ ଅନ୍ଧ
ମନେ ପଡ଼େ ସେହି ଅତୀତ ଗୀତିର
ଦରଭୁଲା ଏକ ଛନ୍ଦ ।



## ନାରୀ-ନର

ବିଧିର ଯୁଗଳ ସୃଷ୍ଟି
ଶକ୍ତି-ଶିବ ଏଇ ନାରୀ-ନର
ଶରୀରେ ଆତ୍ମାର ସରି
ବିଜଡ଼ିତ ବେନି ପରସ୍ପର ।

ନର ଦୀପ, ନାରୀ ଶିଖା
ଏକ ତୂଳୀ ରଙ୍ଗ ତା'ର ଆନ
ନର ସିନ୍ଧୁ, ନାରୀ ଉର୍ମି
ଏକ ବେଣୁ ଆରେକଟି ତାନ ।
ହତ ଧୈର୍ଯ୍ୟ ନର ପ୍ରାଣେ

ନାରୀ-ବାଣୀ ନୀରବ ଆଶ୍ୱାସ
ନରର ହୃତ୍‌ପିଣ୍ଡ ତଳେ
ନାରୀ ଢାଳେ ପ୍ରଚ୍ଛନ୍ନ ପ୍ରଶ୍ୱାସ ।
ନର ଭାବ, ନାରୀ ରସ
ଏକ ଧୂପ ଆରେକଟି ଗନ୍ଧ

ନର ଗୀତି, ନାରୀ ସୁର
ନର କାବ୍ୟ, ନାରୀ ତା'ର ଛନ୍ଦ ।
ବେନିର ସଂଯୋଗେ ବିଶ୍ୱ
ଯୁଗେ ଯୁଗେ ଦୀପ୍ତ ମହୀୟାନ
ସୃଷ୍ଟିର ବିଜୟ-ରଥେ
ବିଭାତଇ ବିଦ୍ୟୁତ୍‌-ନିଶାଣ ।



## ବୃଦ୍ଧ

ହେ ଜରତ !
ଦେଖିଚି ତୁମକୁ—
ଗଦ୍ୟପଦ୍ୟମୟ ଦୀର୍ଘ
ଜୀବନ ଗ୍ରନ୍ଥର
ଅସମାପ୍ତ ଉପସଂହାରରେ ।

ଅବସାନ-ଅଭିନୟ
ନାଟ୍ୟଶାଳା ମୁଖେ
ପତନ-ଉନ୍ମୁଖ ଶେଷ
ଯବନିକା ପାତେ ।

ଅନ୍ତିମ ବାସନ୍ତୀ-ଲଗ୍ନେ
ସହକାର ଶାଖେ
କ୍ଳାନ୍ତ-କଣ୍ଠ କୋକିଳର
କ୍ଷୀଣ କୁହୁତାନେ ।

ଅବସନ୍ନ ବଇଶାଖେ
ଅବିଚ୍ଛିନ୍ନ ମୃଦୁ ସ୍ରୋତ ଗତି
ମନ୍ଥରିତ ଶ୍ରାନ୍ତ ପଦପାତେ ।

ସାନ୍ଧ୍ୟବାତ-ବିଧୂନିତ
ବୃନ୍ତଲଗ୍ନ ଶ୍ଲଥ ପୁଷ୍ପବ୍ୟଥା
ଦୋଳାଚଳ ପ୍ରାଣେ ।

ନିସ୍ତୈଳ ନିର୍ବାଣୋନ୍ମୁଖ
ପ୍ରଦୀପର କ୍ଷୀଣାୟୁ ଜ୍ୱଳନ
ବିକ୍ଷିପ୍ତ ମାନସେ ।
ଜୀବନର ରଣାଙ୍ଗନ
ସୁପ୍ତିମଗ୍ନ ଆଜି
ଅଙ୍ଗେ ନାହିଁ ଯୌବନର
ଅମୋଘ କବଚ

କରଧୃତ କରବାଳ
ଜୀର୍ଣ୍ଣ ଶାଣହୀନ
କଣ୍ଠେ ମୌନ ବଜ୍ରବାଣୀ
ପ୍ରାଣେ ମୌନ ଶୌର୍ଯ୍ୟ ଉନ୍ମାଦନା ।

ତଥାପି ଆଶାୟୀ ତୁମେ
ପରିପୁଷ୍ଟ ସିନ୍ନ ଜୀବନର
ଅଳୀକ ବିଳାସ-ସ୍ୱପ୍ନେ
ଭ୍ରାନ୍ତ ମଦେ
ନିମଜ୍ଜି ! ନିୟତ...

ମୋହାଚ୍ଛନ୍ନ ନେତ୍ର ବେନି
କରି ନିମୀଳିତ
ଚାହଁ ବୃଦ୍ଧ ! ଜୀବନ-ପଶ୍ଚିମେ—



# ମାଟି-ଦୀପ

ସନ୍ଧ୍ୟା ତାମସେ ସ୍ନିଗଧ ଦୀପଟି ଜଳି
ମଉନେ ଚାହୁଁଚି ଧିଆନୀ ବଳାକା ଭଳି
ତଇଳ-ରକ୍ତେ ଜୀବନ ତା' ପରକାଶି
ନିଶ୍ଚଳ ବାତେ ଉଠୁଚି ସେ ଉଭାସି ।

ସଜ୍ଞ ତାରକିତ ସନ୍ଧ୍ୟା ଧରଣୀ ପାଶେ
କହଇ ଆବେଗେ ମୃଦୁ ହାସେ ମୃଦୁ ଭାଷେ
"ଚାହାଁରେ ମିତଣୀ ! ମାଟି-ଦୀପଟିର ମୁଖେ
ଜୀବନ ଦେଇଚି ପରପାଇଁ ଉସ୍ତୁକେ ।

ଆରତିର ଏ ଯେ ମନ୍ଦ୍ର ମଧୁର ତାନ
ଭାଙ୍ଗି ପାରୁନି ଗଭୀର ତାହାର ଧ୍ୟାନ ।
ଦୁଷ୍କର ତପେ ରତ ଥିଲା ପରି ଯତି
ବିଭୁପାଦଗତେ ଲଗ୍ନ କରିଚି ମତି ।

ବିଶ୍ୱସେବାର ମୂର୍ତ୍ତ ପ୍ରତୀକ ପରି
ନିଜ ପରିସର ଘନ ଅନ୍ଧାରେ ଭରି
ସଳିତାର ଦାହେ ଜୀବନକୁ କରି କ୍ଷୟ
ନୀରବେ ଜଣାଏ ତ୍ୟାଗର ବିରାଟ ଜୟ ।

ଉଭାସି ତାର ଉଜ୍ଜ୍ୱଳ ଶେଷ ଠାଣୀ
କହିଯାଏ ସେ ଯେ ମହାନ ସତ୍ୟ ବାଣୀ—
ଅନ୍ତର ତଳେ ଅମାବାସ୍ୟାର ସରି
ସଂବେଦନରେ ଚିର ବନ୍ଦିନୀ କରି
ମାଟି ସନ୍ତାନ ! ଆପଣା ଶକତିମତେ
ଢାଳିଦିଅ ପ୍ରାଣ ବିଶ୍ୱଜୀବନ-ପଥେ ।"

□ □

# ଶରତ

ଥିର ପାଦପାତେ ଏଇ ଆସେ ଚାରୁ ଶରତ
ନୀଳିମା-ଲହରେ ପୁଲକି ଉଠଇ ମରତ
ଶୁଭ୍ର ଶିଶିରଭେଦାରେ
ମୁକ୍ତିଲ ହାସ ଫୁଟି ଉଠେ ବନକେଦାରେ ।

ଦିଗ୍‌ବଧୂ ଆଜି ଶୁକ୍ଳବଉଦ ବସନା
କଟିରେ ଆବରି ଉଷାର ଅରୁଣ-ରଶନା
ନିର୍ମଳା ଆଜି ଧରଣୀ
ନବ ରୂପ ଧରେ ବନ ବିଲ ପାଟ ସରଣୀ ।

ପଙ୍କଜ ଆଜି ଦେଖଇ ସୂର୍ଯ୍ୟ-ସପନ
ରକ୍ତିମା-ରୁଚି ଧରିଚି କୁମୁଦ-ଲପନ
ଜାଗ୍ରତ ଧରା ଅଳସେ
ମୁଗ୍‌ଧେ ଅନାଏ ସରଗର ସୁନା କଳସେ ।

କାନନ ଧରିଚି ତରୁ-ମର୍ମର-ଗୀତିକା
କାଶ-ଅଭିସାରେ ଫୁଲିଉଠେ ତଟ ବୀଥିକା
ମରାଳୀ ଚଳଇ ଗରବେ
ଶରତର ଏଇ ସୁନ୍ଦର ନବ ପରବେ ।

ଗନ୍ଧ ଖେଳାଇ ମନ୍ଦ ପବନେ କିଆରୀ
ଧରା ପାଇଁ କରେ କନକ ବସନ ତିଆରି
ବଳ ହଟିଅଛି ନଈର
କନ୍ଦଳୀ-ହସ ଭୁଲି ପାରୁ ନାହିଁ ଗହୀର ।

□ □

## ସନ୍ଧ୍ୟା ଯାଉଛି ଫେରି

ସନ୍ଧ୍ୟା ଯାଉଛି ରଙ୍ଗ ଉଡ଼ାଡ଼ି
ଆପଣା ଉଆସେ ଫେରି
ଆକାଶେ ଶୁଭୁଛି କୋଟି ବିହଗର
ବିଜୟ ବାହୁଡ଼ା ଭେରୀ ।

ଅଙ୍ଗେ ଆବରି ସ୍ୱର୍ଣ୍ଣ ଦୁକୂଳ
ଦିଗ୍‌ବଧୂ ମହା ହର୍ଷେ ଆକୁଳ
ବିଶ୍ୱ ଶୁଣୁଛି ବିଦାୟ ବାଜଣା
ମୁଗ୍‌ଧ ଶ୍ରବଣ ଡେରି
ସନ୍ଧ୍ୟା ଯାଉଛି ଆପଣା ଉଆସେ ଫେରି ।

ମୃତ୍ୟୁ-ଦୁଆରେ ଜୀବନ-ସଞ୍ଜ
ହଜାଇ ଶତେକ କାମନା-କଞ୍ଜ
ଗଲେ ପୁଣି ଦିନେ ଆସିବ ବାହୁଡ଼ି
ନବୀନ ଜନମ-ରଥେ
ବିଶ୍ୱର ଏଇ ଉଦୟ-ଆଲୋକ-ପଥେ !

❐ ❐

## କୁଆଁର ପୂନିଅଁ

କୁଆଁର ପୂନିଅଁ ଜହ୍ନ
ଆଜି ଘରେ ଲାଗେ ନାହିଁ ମନ
ସ୍ନିଗ୍‌ଧ ଏ ମଧୁ ସଞ୍ଜ ଦିଶଇ
ଆହା କେଡ଼େ ଶୋଭାବନ
କୁଆଁର ପୂନିଅଁ ଜହ୍ନ ।

କେଉଁ ରୂପଦେବ  କାଉଁରୀ ତୂଳୀରେ
ଖିଳ ଏ ଧରଣୀ ରଙ୍ଗେ
ତହିଁ ସାଥେ ଫୁଟେ  ଲକ୍ଷ ଶେଫାଳୀ
ବକ୍ଷ ଫୁଲାଇ ସଙ୍ଗେ
ନଭେ ଉଠିଲାଣି ଶଶୀ ।

ଆଜି ନୂଆ ଏକ ହସ ହସି
ବଉଦ ଉହାଡୁଁ ଷୋଡ଼ଶୀ ବଧୂଟି ସରି
ଆସ ଗୋ ବଉଳ  ସଙ୍ଗାତ ଆସ
ଅରଚନା ଥାଳି ଧରି ।

ଆଜି ପୂର୍ଣ୍ଣିମାର ଏ  ସାନ୍ଧ୍ୟ ଲଗନେ
ପୂଜିବା ବୃନ୍ଦାବତୀ
ଭକ୍ତିରେ ଢାଳି ନତି
ବନ୍ଦି ପୂଜାର ଥାଳା
ଗୁନ୍ଥି ଶେଫାଳୀ ମାଳା
ଚଉଁରା-ଚରଣୁ ମସ୍ତକେ ଆଣି ଧୂଳି
ଦିଅ ଲୋ ସରବେ ଉଚ୍ଚରେ ହୁଳହୁଳି
ମୁଖରିତ କର  ଅଙ୍ଗନ ଆଜି
ଗାନେ ସଙ୍ଗିନୀଗଣ
କୁଆଁର ପୂନିଅଁ ଜହ୍ନ ।

□ □

# ପ୍ରଥମାଷ୍ଟମୀ

ଶୀତ ଜର ଜର
ନିଦର ପରଦା
ରାତିଟି ପାହିଲେ
ରାଇଜ ଯାକର

ପ୍ରଭାତ ସମୀର
ନିମୀଳିତ ଆଖେ
ପୁରେ ପୁରେ ଆଜି
ଅଦୁଆ ପାଇଟି

ଅଳସ ଭାରି
ଦେଇଛି ପାରି ।
କେତେ ଯେ ଛଟା
ଯେସନେ ଲଟା ।

ଛାତି ତଳେ କିବା ପୁଲକର ତାନ ଉଠଇ ବାଜି
ପ୍ରଥମାଷ୍ଟମୀ କେଡ଼େ ବଡ଼ ଦିନ ବରଷେ ଆଜି ।
ପଡ଼ିଶା କୁଟୀରେ ବାସି ଆଡ଼ତିର ଶବଦ ବାଜି
ଉଠଇ କୁମାରୀ ସପନ ହସଟି ରଦନେ ମାଜି ।
ସ୍ୱପ୍ନେ ସେ ତାର ପିନ୍ଧିବା କଥା ଯାଇନି ଛାଡ଼ି
ସହରୁ ଆସିଛି ଆଧୁନିକ ଯେଉଁ ଝରଣା ଶାଢ଼ି ।
ପ୍ରାଚୀ-ବୁକୁ ଚିରି ଧୀରେ ଆସୁଁ ଉଇଁ ତରୁଣ ରବି ।
ଘାସ-ଗାଲିଚାରେ ଫୁଟି ଉଠେ ହିମ ତରଳ ଛବି ।
ସର୍ପିଳ ପଥେ ଚାଲିଛି ଭାରୁଆ ସମୀପ ଗ୍ରାମେ
ଅଷ୍ଟମୀ ଭାର ସଜାଇ ତାହାର ଡାହାଣେ ବାମେ ।
ଚଉଁରା ମୂଳରେ ପଡ଼ଇ ମୁରୁଜ କାନ୍ଥେ ଝୋଟି
ସବୁରି ଅଧରେ ହସର ଲହରୀ ପଡୁଛି ଲୋଟି ।
କାଞ୍ଜି ପୂଜନ ବନ୍ଦାଣ ପୁଣି ସବୁରି ଘରେ
ପଢୁଆଁ ପିଲାର ବଦନେ ଟି ଆଜି ବାଣୀ ନ ଧରେ ।
ହିନ୍ଦୁର ଘରେ କେତେ ଓଷାବାର କେତେ ଯେ ଛଟା
ଆଜି ଏ ପୂନେଇଁ କାଲି ସେ ପରବ ରାଗଢ଼ କଥା ।
ସବୁରି ପରାଣେ ଉଲ୍ଲାସ-ବୀଣା ଉଠଇ ବାଜି
ନୂଆ ମଗୁଶିରେ କେଡ଼େ ବଡ଼ ଦିନ ଧରାରେ ଆଜି !



# ବିଧବା

ଭାଗ୍ୟହୀନା !
ଆକୃତି ତୁମର—
କ୍ରୁର କାଳ-ଝିଟିକାରେ ନିର୍ଦ୍ଦୟ ତାଣ୍ଡବେ
ଜୀବନ-ତଟିନୀ ଗର୍ଭେ
ନିମଜ୍ଜିତ ପ୍ରଣୟ-ତରୀର
ବ୍ୟର୍ଥ ଅନ୍ୱେଷଣ ।

ଦେଖିଛି ନୟନ ତୁମ–
ବୃଷ୍ଟି-ରିକ୍ତ ଶରତ ବାରିଦେ
ହତଶ୍ରୀ–
ରାହୁଗ୍ରସ୍ତ ବିଧୁର ଶଶାଙ୍କେ
ଅଧର–
ତୁଷାରାବୃତ ନିଶାନ୍ତର ପାଣ୍ଡୁର ମୟୂଖେ ।
କରୁଣ ଚାହାଣି–
ତୈଳଶୂନ୍ୟ ଦୀପମୁଖେ
ନିଃଶେଷିତ କ୍ଷୀଣ ବତିଟିର
ଥରଥର ମୁମୂର୍ଷୁ ଆଲୋକେ ।
ମନ୍ଥରିତ ଗତି–
ନିଦାଘର ତାପ-ଶୁଷ୍କ
ସରିତର ଶୀର୍ଣ୍ଣ ସ୍ରୋତଧାରେ ।
ବ୍ୟଥାର ଚାଞ୍ଚଲ୍ୟ ଭାବ–
ଗୃହାଶ୍ରମୀ ବୈରାଗୀର ବିକ୍ଷିପ୍ତ ମାନସେ
ଝଡ଼ମୁଖୀ ତରଣୀର ଉନ୍ମଦ ଦୋଳନେ ।
ନାରୀ ତୁମେ–
ଦୀନା ବିଦଳିତା–
ରୌଦ୍ର-ଦଗ୍‌ଧା ବସୁଧାର
ନିଷ୍ପେଷିତ ଶୁଷ୍କ ତୃଣ ସମ ।

ବେଦନା ତୁମର–
ଅନନ୍ତରୁଁ ବଳି ସୀମାହୀନ
ପାରାବାରୁଁ ବଳି ସୁଗଭୀର
ଧରଣୀହୁଁ ବଳି ସୁବିଶାଳ ।

ଜନତାର କ୍ରୁଦ୍ଧ ନେତ୍ରତଳେ
ତୁମେ ଏକ ଅଶୁଭ ଶକୁନ ।
ନିୟତ କାତରା

ଝଞ୍ଜାଘାତେ ହତାଶ୍ରୟା
ସୁକୋମଳା ବଲ୍ଲରୀ ସଂକାଶ ।

ଅଧୀର ବିଳାପେ ତବ ଶୁଭଇ ନିୟତ
ଛିନ୍ନପକ୍ଷୀ ବିହଗୀର ଆକୁଳ ଗୁଞ୍ଜନ ।
କେଉଁ ଅପଦେବତାର ତୀବ୍ର ଅଭିଶାପେ
ଆସିଥିଲ ଅଶ୍ରୁଜଳେ ଜୀବନକୁ ହାୟ
କରିବାକୁ ଅନୁବେଳ ହାହାକାରେ ସିକ୍ତ !
ଦୁଃଖଶୋକଖେଦଘେରା ବିଶ୍ୱର ଏ ବିଶାଳ ଗ୍ରନ୍ଥର
ବହୁପୃଷ୍ଠା-ସମ୍ବଳିତ ତୁମେ ଏକ ଦୀର୍ଘ ମୁଖବନ୍ଧ ।
ସୃଷ୍ଟିର ପ୍ରଚ୍ଛନ୍ନ ବ୍ୟଥା
ମୂର୍ତ୍ତି ପରିଗ୍ରହି
ଅହରହ ଅଙ୍ଗେ ତବ
ବିଧବା ଗୋ
କରୁଅଛି ଲୀଳା !
ସକଳ ଲାଞ୍ଛନା-ଶେଳ ଆବୋରି ମରମେ
ଚାଲିଛ ଗୋ ଅନାହତେ ଜୀବନର ଅନନ୍ତ ଅୟନେ
ମୃଦୁ ପଦ ସଞ୍ଚାଳନେ
ନିସ୍ତରଙ୍ଗ କାଳ-ସ୍ରୋତ ପରି ।
ଯେଉଁ ଦେଶେ ମୈତ୍ରୀ-ଫୁଲ୍‌ଗୁ
ଐକ୍ୟର ସ୍ୱର୍ଣ୍ଣଦୀ
ପ୍ରୟାଣ ରଚନ୍ତି ଧରି ଦ୍ୱିମୁଖୀ ପ୍ରବାହ—
ଯାମଳ ସୋଦର ସମ ଯେଉଁ ପଥ ଧାରେ
ସୁଖ ସାଥେ ମହାନନ୍ଦ ନିତ୍ୟ କରେ ଗତି
ବନ୍ଧୁସମ ମିଷ୍ଟଭାଷେ ବିରଚି ଆଳାପ—

ଯେ ଦେଶର ଭେଦହୀନ ବିରାଟ ଶାସନେ
ବ୍ୟଥାର ବନ୍ଧନୀ ବକ୍ଷେ
ଅଶ୍ରୁ ଚିର ନେଇଛି ସମାଧି—

ନାହିଁ ଯହିଁ ଧର୍ମନାମେ କ୍ରୂର ଅବିଚାର
ସତ୍ୟତାର ଅପବ୍ୟବହାର—

ସେଇ ପଥେ ଯାଅ ବହି
ଜୀବନର ମହାଲକ୍ଷ୍ୟ ସାଧି
ଅଚପଳା ଅକଳୁଷା
ମନ୍ଦସ୍ରୋତା ନିର୍ଝରିଣୀ ସରି ।
ପଶ୍ଚାତେ ରହୁ ଗୋ ପଡ଼ି
ବିଶ୍ୱର ଏ ନଶ୍ୱର ବିଳାସ
ନିୟତିର ନିଷ୍ଠୁର ସମ୍ପାତ
କାଳର ଏ ତୀବ୍ର ଉପହାସ ।

□□

## ସଂଧ୍ୟାଶ୍ରୀ

ହସେ ଦୂରେ ସ୍ୱର୍ଣ୍ଣ ଚକ୍ରବାଳ
ରତରତ ଫୁଲ ସଞ୍ଜବେଳ
ତୁଙ୍ଗ ତାଳବଣୀ ଛାତେ    ମ୍ଳାନ ରଶ୍ମି ସ୍ୱପ୍ନେ ମାତେ
ଜନହୀନ ନଈ ଆରପାରେ
ବଂଶୀ ରଖି ଓଷ୍ଠପୁଟେ    ଗୋପାଳ ବାହୁଡ଼େ ଗୋଠେ
ବଧୂ କେବା ଚଳେ ସରୋବରେ ।

ଦିବସର ଶେଷ ରାଗେ    ଯାମିନୀର ନିଦ ଭାଙ୍ଗେ
କରେ ସଂଧ୍ୟା ବେନିର ବିବାହ
ବାଉଁଶ-ବଇଁଶୀ ଗାଇ    ସମୀର ଉଠଇ କହି
ବିହଙ୍ଗମେ "ମାଙ୍ଗଳିକ ଗାଥ" ।

ଅସ୍ତରବି ଶେଷ ରାଗ ରଖିଯାଏ ତୁମା ଦାଗ
ଧ୍ୟାନମଗ୍ନା ପଦ୍ମିନୀ-ବଦନେ
ସୁଗଭୀର ନୀରବତା ଢାଳଇ ନୟନ ପତା
କଳକୁହୁ ମୁଖରିତ ବନେ ।

ବିମଳ ସରସୀ ଜଳେ ରହି ରହି କୁତୂହଳେ
ମୁଖ ଦେଖେ ସ୍ଥିର ସନ୍ଧ୍ୟାତାରା
ପୁରେ ପୁରେ ତନ୍ଦ୍ରା ଢାଳି ହସଇ ପ୍ରଦୋଷ-ବାଳୀ
ଧୂପଗନ୍ଧେ ହୋଇ ଆତ୍ମହରା ।

ତୁଳସୀରେ ବାଢ଼ି ବତି ନମେ ନାରୀ ବ୍ରତାବତୀ
ଗୃହ ଶୁଭ ମନାସେ ଅନ୍ତରେ
ଇଷ୍ଟ ଦେବତାରେ ଧ୍ୟାୟି ଶୁଚିଶୀଳା ଅବା କାହିଁ
ନୀରାଜନ କରେ ଭକ୍ତିଭରେ ।

ଗୋଠଛଡ଼ା ଗାଈ କାର ହମ୍ବାଳଇ ବାରବାର
ପାଟ ବିଲେ ହୋଇ ବାଟବଣା
ଶୁଣେ ପକ୍ଷୀ ନୀଡ଼ ବାସେ ଦେଉଳର ବେଢ଼ା ପାଶେ
ଆଳତିର ସୁସ୍ୱର ବାଜଣା ।

ଗାଆଁ ନାଳ ପଥପରେ ଶଗଡ଼ିଆ ଚଳେ ଘରେ
ଗାଇ ‘ଭଞ୍ଜ’ ରସ ଚଉପଦୀ
ନାତିରେ ବସାଇ ପାଖ ପୁଚ୍ଛେ ଅଜା ମାନସାଙ୍କ
ନ ଆସିଲେ ଉଠେ ପୁଣି ଚଢ଼ି ।

ଜଳି ନିଭେ ପୁଣି ଜଳେ ଦୂର ମଶାଣିର ତଳେ
ଦପଦପ ପିତାଶୁଣୀ ନିଆଁ
ଡାକ ଛାଡ଼ି ହୁକେ ହୁଆ ବିଲୁଆଏ ତୁହା ତୁହା
ବାହାରନ୍ତି ଗାତୁ ମାରି ଡିଆଁ ।

 କ୍ଷୀଣସ୍ରୋତା ନଦୀ ପାଖେ ପଲ୍ଲବିତ ବଟଶାଖେ
ଅନ୍ଧକାର ପଡ଼େ ଯେହ୍ନେ ଝୁଲି
ବିଜନେ ମୁଁ ଦେଖେ ବସି ବନଶିରେ ତରା ଖସି
ଆପଣାକୁ ଯାଏ ଯେହ୍ନେ ଭୁଲି ।

ଉଠେ ଭାଗବତ ଘରେ ମଧ୍ୟେ ମଧ୍ୟେ ଥରେ ଥରେ
ମୁରଜରୁ 'ଜଗନ୍ନାଥ' ବାଣୀ ।
ଏଣେ ଗୃହେ ଶିଶୁ କାହିଁ ଢେଙ୍କୀମାର କୋଳେ ଶୋଇ
ଶୁଣେ 'ବୁଢ଼ୀ ଅସୁରୀ' କାହାଣୀ ।

ଝରାଇ ଲାବନ୍ୟଝରା ହସନ୍ତି ଦୁଇଟି ତାରା
ପରସ୍ପରେ ହୋଇ ଚାହାଁଚୁହିଁ
ଅଣାୟତ୍ତେ ଆଜି ଯେହ୍ନେ ସଞ୍ଚର ଏ ରୂପାୟନେ
ହଜିଅଛି ନିଜ ମଧ୍ୟେ ମୁହିଁ ।



## ଉଷା

ଗୋରା ମାଳତୀର ଚୋରା ସୌରଭ
ଆସେ ବହି
'ଉଠ ସଙ୍ଗାତ' କହି କହି
ଖଞ୍ଜନ ଡାକେ ଡାହୁକରେ
"ଚାହାଁଟି କେସନେ ନାଲି ଛୁଁଚ ଦିଏ
ଉଷାବଧୂ ତାର ପ୍ରାଚୀ-ଘରେ ।"

ଚାହିଁ କାହା ମୁଖେ କି ଭାବି କେଜାଣି
ତାରାଟିଏ
ମଉନେ ଅଳପ ହସିଦିଏ

ମୁଖ ହେରି ନଦୀ ଥିର ଜଳେ
ନିଶିର ଶିଶିର ହସେ ଦରଦର
ବନ ତମାଳର ଶ୍ୟାମ ଦଳେ ।

ବିରହ-ବେଦନେ ଚକୋର ବିଳପେ
କଇଁକଇଁ
ଆକୁଳ ନୟନେ ମୁଖ ନଇଁ
"ରଜନୀ ତ ଆସି ହେଲା ଭୋର
ସୂରୁଯ ଦେବତା ଟେକିଲେଣି ମଥା
ନ ଫେରିଲା କିଆଁ ପ୍ରିୟା ମୋର ?"

ନବ ରବି-କରେ ତାଳବନ ଧରେ
ରୂପା ଛତା
ଅନାଏ ଚମକି ତରୁ-ଲତା
ଶୁଣି ଗୋପସୁତ ବେଣୁତାନ
ନିଦୁଆ ପବନେ ଡୋଳେଇ ଡୋଳେଇ
ମୁରୁକି ହସଇ ବାଳଧାନ ।

ଉଷା ତରୁଣୀର ଗୋଲାପୀ ତୂଣୀର
ବିହାୟସେ
ଫିଙ୍ଗି ରଶ୍ମି-ଶର ହସେ
ଏତେବେଳେ କ୍ଷୀଣ ନଦୀବୁକେ
ତରତର ବେଗେ ତରଣୀଟି କାର
ଭାସି ଭାସି ଯାଏ ସୁଅମୁଖେ ।

ପ୍ରଭାତ-ନିକଷେ ହେମ ରାଗେ ହସେ
ଅରୁଣିମା
ନିରେଖି ଉଜ୍ଜଳ ପ୍ରାଚୀ ସୀମା

ସପନରୁ ଉଠଇ ଚରାଚର
ନିଭିଯାଏ କାହିଁ ନାଲି ଛୁଁଚ ଦାଗ
ଭାଙ୍ଗିଯାଏ ଉଷା ଖେଳଘର ।

□ □

# ଛୋଟରେ ବଡ଼

ଛୋଟ ଛୋଟ ଫୁଲ
ଟିକି ଓଠଧାରେ
ଛୋଟ ଛୋଟ ଶ୍ୟାମଘାସ
ନାଲି ଗଲୁଗୁଲୁ ହାସ

ଛୋଟ ତରାଟିର
ଓଦା ଆଖିତଳେ
ମିଟିମିଟି ଆଖିଠାର
ସରୁ ସରୁ ଲୁହଗାର

ଛୋଟ ପ୍ରଦୀପର
କଅଁଳ କୁସୁମ
ସ୍ନିଗ୍ଧ ସ୍ତିମିତ ଜ୍ୟୋତି
ଛୋଟ ହିମକଣା ମୋତି

ପ୍ରଜାପତି ଦେହେ
ଛୋଟ ଧୂଳିକଣା
ଟୋପିଟୋପି ଛୋଟ ଚିତା
ଛୋଟିଆ ବରଷା ଛିଟା

ଆଖି କହେ ଯାକୁ
ମନ ପାଏ ତହିଁ
ସୃଷ୍ଟିରେ ଅତି ସାନ
ବିରାଟର ସନ୍ଧାନ ।

□ □

# ବିଳାସ କଳ୍ପନା

ସପନ ରାଇଜେ ବିହରି ତରୁଣ କବି !
ଲେଖନୀରେ ଯେତେ ଫୁଟାଇଲ ଚାରୁଛବି
ତା ମଧୁ ଛନ୍ଦ, ପ୍ରାଣବିମୋହନ ରସ
ବିଳାସୀ ହୃଦୟେ ନିମିଷକେ କଲା ବଶ ।

ସଂଗୀତେ ତବ ନବ ଯୌବନ ନିଶା
ଢାଳିଦବା ଯେଉଁ ମୋହନ ମାଦକ ଦିଶା
ଶ୍ରବଣେ କରି ସେ କଳ୍ପନା-ମଧୁ ପାନ
ବିଶ୍ୱେ ତୁମର ଦେଖାଇଲ ଅବଦାନ ।

ଯେଉଁ ନାୟିକାରେ କାବ୍ୟରେ ଦେଲ ଥାନ
କଣ୍ଠରେ ତା କିନ୍ନରୀ କଳଗାନ ।
ମୂର୍ତ୍ତ କରିଲ ଯେ ଭୂଷଣେ ନାୟକରେ
କାମଦେବ ସମ ପଞ୍ଚବାଣ ସେ ଧରେ ।

ମଳୟ ସଙ୍ଗେ ଲକ୍ଷ ଫୁଲର ବାସ
କଳ୍ପନା-ବନେ ଖେଳାଇ ଗଲାକ ରାସ
ଲେଖନୀରେ ତବ ଛନ୍ଦର ମାଦକତା
ରୂପ ଦେଲା କୋଟି ଆକାଶରୁ ତୋଳି କଥା ।

ସ୍ନିଗ୍ଧ ଶେଫାଳୀ, ଶୁଭ୍ର ଜୋଛନା ରାତି
କବି ଜୀବନର ହେଲେ ତବ ପ୍ରିୟ ସାଥୀ
ପ୍ରକୃତି ସ୍ନେହେ କହିଲା ତୁମରେ "ପ୍ରିୟ !
ସୋହାଗର ଶତ ଅର୍ଘ୍ୟ ମୋ କରୁଁ ନିଅ ।"

ଡାକିଲା କୋକିଳା କାନନଉଆସରାଣୀ
ଶ୍ରବଣେ ତୁମର ଢାଳି କଳ ଲୋଳ ବାଣୀ
ବଉଳର ନୂଆ କଅଁଳ ସାଉଁଳା ବାସ
ଧାଇଁଲା ସହଳେ ଛାଏଁ ଛାଏଁ ତୁମ ପାଶ ।

କଳ୍ପନାତୂଳୀ ଧରି କେତେ ଦିନ କବି !
ଚିତ୍ରୁଥିବ ଏ କୁହୁକ-ରାଇଜ ଛବି ?
ଦେଖ ଦେଖ ଥରେ ଦୁଃସ୍ଥା ରମଣୀ ଦିହ
ହେଲାଣି କେସନେ ଅନଶନେ ମୃତାଖିଅ ।

ବେଦନା ଦୈନ୍ୟେ ଶୀର୍ଣ୍ଣ ଯାହାର ମୁହଁ
ସିଏ କି ତୁମର ଯୋଗ୍ୟ ନାୟକ ନୁହଁ ?
ହଜିଅଛି ଓଠୁଁ ଚିରଦିନ ଯାର ହାସ
ଭାବିଚ କି ଦିନେ କରୁଣ ତା ଇତିହାସ ?

ରକତ ଢାଳେ ଯେ ବିସୋରି ଆପଣା ସୁଖ
ତା ପାଇଁ ତୁମର ଲେଖନୀ ରହିଲା ମୂକ ?
ଦିନେ ତ ତାହାର ନୂଆଁଣି କୁଟୀରେ ଚାହିଁ
ଜନ ସମ୍ମୁଖେ ପଦିଏ ଗାଇଲ ନାହିଁ ?

ନିରାଧାରେ ନିତି ଜଳେ ଯା ଜଠର ନିଆଁ
ତା ଲାଗି କେବେ କି କାନ୍ଦଇ ତୁମ ହିଆ ।
ମରମତଳେ ଯା ମରଇ ଲକ୍ଷ ଆଶା
କି ହେବ ତାହାର ଏ ତୁମ ରସାଳ ଭାଷା ?

ଆମୋଦ ଢାଳଇ ତୁମରେ ଯେ ଝଡ଼ ରାତି
ବିଦାରଇ ସେହୁ ଅଭାଗା ଶ୍ରମିକ ଛାତି
ଶାରଦୀ ସ୍ୱପ୍ନ ନବ ଫାଲ୍‌ଗୁନୀ ରାସ
ଦେଖିବାରେ ତାର କାହିଁ ଅବା ଅବକାଶ ?

ତୁମେ କହ ଯାରେ ସ୍ୱପ୍ନିଳ ବାରବାଟୀ
ତା ନୟନେ ସେ ଯେ ରୁକ୍ଷ ଧୂସର ମାଟି
ତୁମେ କହ ଯାରେ ମୃଦୁ ଦୀନମଞ୍ଜୁରିଆ
ସେ ଭାବେ ତା ପାଇଁ ବଞ୍ଚିଚି ଏ ଦୁନିଆଁ ।

ମଣିଷ ମଧ୍ୟେ ଆତ୍ମା ରାଜଇ ଏକ
ନ ଥାଉ ପଛେ ତା ସମ୍ମାନ ଅବା ଟେକ
ନିତ୍ୟ ଯେ ଦେଖେ ନିରାଶା ମରୁର ବାଲି
ରକତ ତାର ବି ତୁମରି ସମାନ ନାଲି ।

ଛନ୍ଦରେ ତୁମ ନିର୍ଝର ପଛେ ବହୁ
ଏତିକିରୁ ଏବେ ଲେଖନୀ ଅଚଳ ରହୁ
ଯେଉଁ ଚିନ୍ତାରେ ନିଃସ୍ୱର ନାହିଁ ଥାନ ।
ବିଶ୍ୱରୁ ବେଗେ ମରୁ ସେ କବିର ଗାନ ।



## ମଞ୍ଜି-ମଞ୍ଜା

ବକଟେ ମଞ୍ଜିରୁ ଗଛ
କେତେ ତାର ବଳରେ
ଗଛ ହେଲେ ମଞ୍ଜି ନାଆଁ
ଲୁଚେ ମାଟି ତଳରେ ।
ମଞ୍ଜିର ଜାତକେ ଥାଏ
ଗଛ ଲଟା ଆଇଷ
ଖୋଜେ ନାହିଁ ମାଟିର ସେ
କିଛି ବାଗ ବାଇସ ।

ବୁଣିଦେଲେ ବୋଲ ମାନି
ଉଠଇ ସେ ମନକୁ
ସେହି ସିନା ରଖେ ଆମ
ଅମାରରେ ଧନକୁ ।

ସେହି ମୂଳ, ସେହି ଚାଷ
ସେହି ଆମ ବିହନ
ତାହା ଲାଗି ଖାଉଁ ଆମେ
ଭାତ ଡାଲି ତିଅଣ ।

ଦେହେ ପିନ୍ଧୁ ଲୁଗାପଟା
ମୁଣ୍ଡେ ତେଲ ଲଗାଉ
ତାହାଯୋଗୁଁ ପଢୁ ପାଠ
ଯେତେ ବହି ମଗାଉ ।

ସେହି ଦିଏ ଫୁଲ ଫଳ
ଚିନି ଗୁଡ଼ ମହୁ ରେ
ଅଉଷଧ ମଉଷଧ୍
ରୋଗେ. ଯେତେ ଖାଉଁରେ ।

ଏହି ମଞ୍ଜି ପ୍ରାଣ ଆମ
ଏହି ମଞ୍ଜି ଧନଟି
ତା ପରି ପାକଳ ହେବ
ଦିନେ ଆମ ମନଟି ।

ଗଛାରୁ ଉଠୁଛେ ଯେତେ
ଆମେ ସବୁ ପିଲାଏ
ବଡ଼ ହୋଇ ବଡ଼ କାମେ
ନ କରିବା ଢିଲା ହେ ।

କ୍ଷେତ ବଢ଼ିଗଲେ ଶେଷେ
ମଞ୍ଜି ସିନା ସାହାଟି
ଆମେ ଲୁଗିଗଲେ ଭାଇ
ଥିବ ଆମ ନାଆଁଟି ।

❐ ❐

# ଅରଖ

ଆରେ ଅରଖ

ଡାକ ଦେଲୁ ଶିବ ରଖ ହେ ରଖ ।
ଅରକ୍ଷ ପରାୟେ ଥିଲୁ ତୁ ପଡ଼ି
ଆଜି ଶୋଭୁ ଶିବ ମଥାରେ ଚଢ଼ି ।
ମହାଦେବଙ୍କର ହେଲାରୁ ପ୍ରିୟ
ନିତି ଖାଉ ଦୁଧ ଲହୁଣି ଘିଅ ।
ମହାଦେବଙ୍କର ପାଦକୁ ଧରି
ପତର ହେଲା ତୋ ଅମୃତ ପରି ।

ନିଉମୋନିଆଁକୁ ବଇଦ-ମାଆ
ଜୁହାରଇ ତତେ ବିଷାନ ଘାଆ ।
କଣେଇ ଚାହିଁଲେ ତୁ ସାପ ଆଡ଼େ
ଦେଖୁଁ ଦେଖୁଁ ତାର ବିଷଟି ଛାଡ଼େ ।
ଆମବାତ ବାପ- ରାଣ ପକାଇ
ବିଜୁଳି ପରିକା ପଳାଏ କାହିଁ ।
ନ ପଚାରିଲେଟି କେହି ମରତେ
ଈଶ୍ୱର ନିଶ୍ଚୟ ଚାହିଁବେ ମତେ ।
ପର ପାଇଁ ଦେଲେ ଏ ମୋର ଦିହ
ସବୁଦିନେ ତାଙ୍କ ହୋଇବି ପ୍ରିୟ ।
ଅରଖ ପରିରେ ଅରଖ ପରି
ବଣ ବୁଦାରେ ମୁଁ ନ ଯିବି ଝଡ଼ି ।



# ରତ୍ନଫୁଲ

ମୋ ନାଁ– ରଜନୀଗନ୍ଧା
ବଇଶାଖ କାନିରେ ମୁଁ ଥାଏ ଗୋ ବନ୍ଧା ।

ମୋ ନାଁ– ବଉଳ ଫୁଲ
ଗଭାକୁ କେ ସାଜେ ନାହିଁ ମୋ ମାନ ତୁଲ ।

କହେ– ବରଷା ଯୂଇ
ପାଦ ଚିପି ଚିପି ବାଟେ ଆସୁଚି ମୁହିଁ ।

ମୋ ନାଁ– ବଡ଼ ଟଗର
ଭୋଦୁଅ ପଶିଲେ ଗଛେ କରେଁ ମୁଁ ନାଟ ।

ମୋ ନାଁ– ଥୋପା ମାଳତୀ
କିଆ ଡାକେ ମିତ ଟିକେ ଆସ ମୋ କତି ।

ମୋର– ନାଆଁ କଞ୍ଚନ
ଚଗଲା ପିଲାଟି ପରି ମୁଁ କନକନ ।

ମୋ ନାଁ– ରଙ୍ଗ ମନ୍ଦାର
ମାଆ ମଙ୍ଗଳାଚଣ୍ଡୀର ମୁଁ ଗଳାହାର ।

କହେ– ଧୋବଲି କଇଁ
ଶରତେ ଦେଖିବ ମୋର ଛଟକ ଛଇ ।

ମୋ ନାଁ– ନାଲି ପଦୁଅଁ
ମୋ ସମାନ ନାହିଁ କାର ଡଉଲ ମୁହଁ ।

ଗୋରୀ– ଗଙ୍ଗଶିଉଳି
ଟିକିଏ ଆଉଁସି ଦେଲେ ପଡ଼େ ଝାଉଁଳି ।

ମୋ ନାଁ– ସୂରୁଯମୁଖୀ
ମଗୁଶିର କହେ ମତେ ଡାକିଲୁ ତୁ କି ?

କୁନ୍ଦ– କଅଁଳପ୍ରାଣ
ଶୀତ କହେ ବୋହୂକୁ ଲୋ ବନ୍ଦେଇ ଆଣ ।

ମୋର– ନାଆଁଟି ମଲ୍ଲୀ
ଫଗୁଣ ସଞ୍ଜରେ ଆସେ ମୁଁ ହଲି ହଲି ।

ମୋ ନାଁ– କନକ ଚମ୍ପା
ନିଆଳୀ ଡାକଇ ମତେ ଅପା ଲୋ ଅପା ।

ମୋ ନାଁ– କଣ୍ଟା କେତକୀ
ମାଘ ପଛେ ପଛେ ଆସେ ମୁଁ ଛକି ଛକି ।

ମୋର– କାମିନୀ ନାଆଁ
ପେଣ୍ଠାଏ ଫୁଟିଲେ ମୁହିଁ ଚହଟେ ଗାଆଁ ।

ମୋ ନାଁ– ଶେତ ଗୋଲାପ
ଝିଅଙ୍କୁ ମୁଁ କହେ ମତେ ବେଣୀରେ ଥାପ ।

ମୋ ନାଁ– ପେଣ୍ଡା ଅଶୋକ
ବସନ୍ତକୁ ଦେଖି ଭୁଲେ ମୁଁ ଶୋଷ ଭୋକ ।

ଋତୁ– ଫୁଲଙ୍କୁ ବନ୍ଧି
ଫୁଟି ଆମେ ବାସ ଦେବା ଭଳିକି ଭଳି ।



# ଅଙ୍ଗପ୍ରତ୍ୟଙ୍ଗ ମୋର

ଗୋଡ଼ ପାଇନାହିଁ ନିଜେ ଚାଲିବାକୁ
ପର ଉପକାର ପାଇଁ
ରାତି ଅଧେ କା'ର ପଡ଼ିଲେ ବିପଦ
ବେଗେ ଯିବି ବୋଲି ଧାଇଁ ।

ପେଟ ପାଇନାହିଁ ନିଜେ ଖାଇବାକୁ
ବୁଝିବି ଅପର ଭୋକ
ନିଜ ବାଣ୍ଟୁ କାଟି ଭୋକିଲା ମୁହଁରେ
ପରଷିବି ଦୁଇ ଢୋକ ।

ଛାତି ପାଇନାହିଁ ନିଶ୍ୱାସ ନେବାକୁ
ସହିବାକୁ ସବୁ ଦୁଃଖ
ଏହି ଛାତିରେ ମୁଁ ଧଇଯ ଧରିଲେ
ଦେବି ସବୁରିଙ୍କୁ ସୁଖ ।

ହାତ ପାଇନାହିଁ ମୁଁ ଚଳିବା ପାଇଁ
ହାତ ଟେକି ଦେବି ଦାନ
କଲମେ ବାଢ଼ିବି ମଥାର ଯେତକ
ବଡ଼ ବଡ଼ ଚିନ୍ତାମାନ ।

ବେକ ପାଇନାହିଁ ହାର ପିନ୍ଧିବାକୁ
ପଡ଼ିଲେ ଅସଲ ଘାଟି
ଦେଶରକ୍ଷା ପାଇଁ ନିଜେ ଧରି ଛୁରୀ
ନିଜ ଗଳା ଦେବି କାଟି ।

ମୁଣ୍ଡ ପାଇନାହିଁ ବୁଦ୍ଧି କଉଶଳେ
ନିଜେ ରହିବାକୁ ସୁଖେ
ଚିନ୍ତାକରି କିଛି ଊଣା କରିବାକୁ
ଦୁନିଆରେ ଶୋକ ଦୁଃଖେ ।

❑ ❑

# ଦୁର୍ଗତାର ପ୍ରଥମ ପତ୍ର

''ଶ୍ରୀ ଦଧିବାମନ ଶରଣ'' ଏହିକି
ଲେଖିବା କାରଣ ବୋଉ,
ଗଲା ବୁଧବାର ଭାଷା ତୋର ପାଇ
ଆଖିରୁ ଝରିଲା ଲୋହୁ ।

ଭାବିଥିଲୁ ସିନା ବାହାଦେଇ ମତେ
ନିଦକ ହୋଇବୁ ବୋଲି
କେତେ ମନ ଦୁଃଖ କଲମ ମୁନରେ
କହିବି ତୋ ଆଗେ ଖୋଲି ।

ଲେଖିଲେ ତ ହେବ ପୋଥି
ଏକା ତୁ ପଢ଼ିବୁ ଗନ୍ଧ ତା ଯେମିତି
ନ ପାଇବେ 'ମଣି' 'ମୋତି' ।

ଦହଗଞ୍ଜ ହୋଇ ମଫସଲ ଛାଡ଼ି
ଆଇଲି ସିନା ମୁଁ ସତ

ଶାଶୁ ଗରଗର ପଞ୍ଚମ ଦିଅର
ଜାଣି କି ଥିଲି ଏ ଘତ ?

ମୋ ଆସିବା ଶୁଣି କରିଲେ ନଣନ୍ଦ
ମୁହଁକୁ ଅଥାର ହାଣ୍ଡି
ଖରଖର ହୋଇ ଝାଡ଼ିଗଲା ବହେ
ଘରର ପୋଇଲୀ ରାଣ୍ଡୀ ।

ଶଶୁର କହିଲେ ଯାଉ
ଯାଆ ଦୁହେଁଯାକ ମୁହଁମୋଡ଼ି ପଛେ
ହେଉଥିଲେ କାଉ କାଉ ।

ଛାଡ଼ୀ ପରି ମୋର ତୁଣ୍ଡଟିକୁ ମାରି
ଗାଡ଼ିରେ ବସିଲି ଯେବେ
ଭାବୁଥିଲି ଆଉ ଏ ଯମପୁରୀକୁ
ଲେଉଟିବି ନାହିଁ କେବେ ।

କାନ୍ଦୁ କାନ୍ଦୁ ଆଖି ମୁଦି ହୋଇଗଲା
ଜାଣିନାହିଁ କେତେବେଳେ;
ଟେସନେ ଉତୁରି ପହିଲି ଥର ମୁଁ
ଚଢ଼ିଛି ଯିମିତି ରେଲେ ।

ମିଛ ନ ମଣିବୁ ଟିକେ
ଉଡ଼ିଗଲା ଖାଲି ମନ ମୋ ସତେ କି
ଠିଇକି ସରଗ ଡିଖେ ।

ଅସୁମାରି ଆଶା ସପନ ଦେଖି ମୁଁ
ସେ ଗାଆଁ ମୁଲକ ଛାଡ଼ି
ଶାନ୍ତିରେ ଟିକିଏ ଦିନ ନେବି ବୋଲି
ଆସିଥିଲି ଗୋଡ଼ କାଢ଼ି ।

କରମ ଯା ତୁଠ- ପଥରକୁ ଯୋଗ
ପତର ହେବ ସେ କାହିଁ

ଜନମଟା ଖାଲି ମୁହଁମାଡ଼ି ବାର
ଗୋଇଠା ଖାଇବା ପାଇଁ ।

ଛୁଇଁଲା ଦିନୁ ଏ ମାଟି
ଝୁରି ଝୁରି ଆମ ବାଡ଼ିଘର ଗାଆଁ
କଲିଜା ହେଉଛି କାଟି ।

ଏ-ମେ ପାସ୍‌ବାଲା ବରେ ଦବୁ ବୋଲି
କାଟିଥିଲୁ ଲୁହାଗାର
ମୋର ଏ ହୀନସ୍ତା ଦେଖିଲେ ଇଚ୍ଛୁଣି
ଆଖିରୁ ବୁହାନ୍ତୁ ଧାର ।

ଅମଲା ବିଚରା ଦରମଲା ପରି
ପରବାସେ ପଡ଼ିଥାଏ
ଏ ମାସ ମଇନା ସେ ମାସ ମୁଣ୍ଡକୁ
କେଉଁକାଳେ ନାହିଁ ପାଏ ।

ତହିଁରେ ଖରଚ ନାନା
ଗାଆଁରେ ଯାଙ୍କର ଭୂଇଁଗୋବେ ନାହିଁ
ଚଳିବାକୁ ମୁଠେ ଦାନା ।

ଗହଳି କୁଟମ୍ବେ ପେଲି ଦେଇଛୁ ତ
ପାଠ ଦି'ଅକ୍ଷର ପାଇଁ
କୋଳି ଗଛ ଛାଇ ଚାକିରି ବେଉସା
ଆଜି ଅଛି କାଲି ନାହିଁ ।

ବଡ଼ ଟପାକହୀ ନଣନ୍ଦ କାହୁରୀ
ଦୁରୁଦଣ୍ଡୀ ହୁଇ ଯାଆ
ମରି ଶୋଇଥିଲେ ତିନିଦିନ, ଶାଶୁ
ନ କହିବ ଟିକେ ଆହା ।

ଯିବି ଯେବେ ଜାଣି ଜାଣି
ଭାତ ଥାଳି ପାଖ ଧଇଲା ବେଳକୁ
ହେବ ଛାଇ ନେଉଟାଣି ।

ଯେତେ ମାଠିମୁଠି ଲେସିଲେ କାନ୍ଥକୁ
ଚଡ଼କି ଦିଶଇ ଫଟା
କଥାରେ କାମରେ ଯେତେ ମନ ନେଲେ
କପାଳଟା ହଟହଟା ।

ବାପଘର କୋଠା ମାଡ଼ିବା ପାଇଁକି
ଟେକି ଟେକେ ନାହିଁ ମନ
ଯେଉଁଠି କୋଇଲି ମିଠା ଭାବ ବିନା
କାନ୍ଦୁଛି ଚଇତ ବନ ।

ଯାଇ ଭଲା କୋଉ ସୁଖ
କୁରୁମ ପରିକା କରମ ମୋହର
କାଳେ କାଳେ ତଳ ମୁଖ ।

ଆମାଶା ପୋଖରୀ ଜଗି ତ ରହିଛି
ଆଜି ମୁଣ୍ଡ କାଲି ପେଟ ।
ସରମ ଲାଗୁଛି କଦବାଏ କେବେ
କବିରାଜ ହେଲେ ଭେଟ ।

ଡାଲି ଭାତ ଠଉଁ ନିଆଁ ପାଣି ଯାଏ
ସକଳ ଦରବ କିଣା
ମଥା ଘୂରିଯିବ ମଣିଷର ଏଠି
ଦଣ୍ଡକେ ପଇସା ବିନା !

ଯେତେ ଆଶା ଥିଲି କରି
ସବୁ ଲୋ' ବତୁରା କୁଟା ଧୂଆଁ ପ୍ରାୟେ
ମନରେ ଗଲାଣି ମରି ।

ଦୁଇ ବଖରାକୁ ଅଠେଇଶ ଟଙ୍କା
ଯାଉଅଛି ଘରଭଡ଼ା
ଦୁଧ ଘିଅ ମାଛ ସପନ, କେବଳ
ରାନ୍ଧୁଛି କଖାରୁ ଖଡ଼ା ।

ସିନେମା ଥେଟର ଛିଇ କରିଛି ମୁଁ
ସଦା-ନିଅଣ୍ଟିଆ ପାଇଁ
ତହିଁରେ ଆହୁରି ଲେଖିଚିନି ଶାଶୁ
"ମନେ କିରେ ପଡୁନାହିଁ
ଭାରିଯା ବୋଲରେ ପଡ଼ି
ବଟେଇବୁ ଲୁଗା ଶରଦୀ ପେଇଁ କି
ଅଗିରା ପୂନେଇଁ ଘଡ଼ି ।"

ବଳଟେ ବୋଲି ଏ ନାତି ତୋର ପୁଣି
ଆଖିକୁ ଦେଉଛି ଖୋଷି
ଚାରି ମାସ ହେଲା ପିହୁଳା ରୋଗ ତା
ରକତ ନେଲାଣି ଶୋଷି ।

ଖହେ ମାନସିକେ ହେଉ ନାହିଁ ଭଲ
ରାଇଜ ଚିକିଛା କରି
ଏତେ ହରବର ହେବାଠଉଁ ପଛେ
ମରିଲେ ଯାଆନ୍ତି ତରି ।

କପାଳ ଏଡ଼ିକି ହୀନ
ହାତ ଛନ୍ଦା ଦିନୁଁ ଚିନ୍ତା ଦକେ ଖାଲି
କଟିଲା ଖାଲି ମୋ' ଦିନ ।

ବାପାର ଅଭାବ ବୁଝି ନୋହିଥିଲା
ତୋଓରି ଶରଧା ପାଇଁ
ସେ ସୁଖର ଦିନ ସପନ ପରିକା
ମିଳେଇ ଗଲାଣି କାହିଁ ।

ଆସୁଥିଲେ କେହି ଗାଆଁରୁ ଆମର
ପଠାଇବୁ କିଛି ବିରି
ବାସୁମତୀ ଉଆ ଚାଉଳ ତା' ସଙ୍ଗେ
ଦିଅଁକୁ ଯାଚିଛି ଖିରି

କରିବି ମୁଁ ଗଜମଣ୍ଡା
ବାରିଗଣ୍ଡୁଁ ବୋଉ ନଡ଼ିଆ ଦେବୁ ଲୋ
ମନେ କରି ଦୁଇ ଗଣ୍ଡା ।

ଦେଇଥିଲୁ ଯୋଉ ବେଢ଼ାଣ ଖଣ୍ଡିକ
ଫଗୁଆ ବାରିକ ହାତେ
ଖୁଞ୍ଚା ଲଗାଇଲେ ଛିଦିରେ ନଣନ୍ଦ
ମଡ଼ା କରି ସାଥେ ସାଥେ ।

ଦୁଇ ଖଣ୍ଡି ଛାଡ଼ି ପେଡ଼ିଶାଢ଼ି, ବାକି
ହେଲାଣି ତ ସବୁ ଧୂଣା
ବାପାକୁ ଖାଇଛି ବୋଲି କେଉଁ ପାଇଁ
ମନକୁ ନ କରେ ଊଣା ।

ଡରି ମୁଁ ସଭିଙ୍କି ଚଳେଁ
ତୋହରି ମୁହଁଟି ଦିଶିଲେ କାହିଁକି
ଆଖିରୁ ମୋ ପାଣି ଗଳେ ।

ଲେଖୁ ଲେଖୁ ବୋଉ ଲେଖି ତ ଗଲିଣି
କେତେ ଲୋ ଗହନ କଥା
କପାଳକୁ ପୁଣି ଭାଇଟିଏ ନାହିଁ
କାନ୍ଥେ ଡେରିବାକୁ ଛତା ।

ଲେଖିଥିଲୁ ମତେ ଗାଆଁକୁ ନବାକୁ
ଗଲା ମଗୁଶିର ମାସେ
ସୁଆଡ଼େ ଗଲେ ତ କପାଳକୁ ଘେନି
ବୁଲୁଥିବି ପାଶେ ପାଶେ
ମନ ନକରିବୁ ଚୂନା
ମୋଓ ରାଣେ ବୋଉ ମୁଣ୍ଡ ମୋ ଖାଇବୁ
ଇତି
ତୋ ଅଭାଗୀ
'ସୁନା'

□ □

# କିରାନି ବୋହୂ

"କିଏ ସେ ଡାକୁଚି ଦାଣ୍ଡ ଦୁଆରେ
ଶୁଣିଲ ଟିକିଏ ଯାଇ—"
ଚିଠି ଖଣ୍ଡିକ ବଢ଼ାଇ ହାତକୁ
ରହେ ଚପରାସୀ ଚାହିଁ ।

ପରୋଆନା ଧରି ପଢ଼ୁ ପଢ଼ୁ ବାବୁ
ଘରଣୀ ହୋଇଲେ ନିଆଁ
"ବାସି ମୁହେଁ ପାଣି ନ ପଡୁଣୁ ତୋପେ
ହାଜର ଆସି ଏ ମିଆଁ ?"

"ଶୁଣୁଚନା କୁନି ବୋଉ—
ଜଲଦି ଆଜି ମୁଁ ଯିବି ଅଫିସକୁ
ଖାଇବା ପଛକେ ନୋହୁ ।"
"ସାରା ରାତି କାଲି ପଡ଼ି ନାହିଁ ମୋର
ଟିକେ ହେଲେ ଆଖି କଷା
ଛୁଆଟା ଦେହରେ ବାରମାସ ବାର
ରୋଗ ତ କରିଛି ବସା ।"

ଚବର ଚବର ହୁଏ ଖାଲି ଶାଶୁ
ଆପଣା ମନକୁ ମନ
"ଶନିବାର ଆଜି—ସକାଳୁ ପରାଲୋ
ଇସ୍କୁଲ ଯିବ 'ଘନ'
ରଖିଚୁ ନା ବାସି ରୁଟି—"
କହୁଁ କହୁଁ ନାତି-ନାତୁଣୀ ଭିତରେ
ଲାଗିଗଲା କୁଟାକୁଟି ।

ପାଲଟା ଦରଭା ତୁରିତେ ପଖାଳି
ବୁଢ଼ୀ ଡରେ ତରବରେ
କୋଥଳି ସେବାକୁ ପଛକରି ବୋହୂ
ପଶିଲା ଭିତର ଘରେ ।

ଚାହା ଛାଣୁ ଛାଣୁ ଦାଣ୍ଡେ ଶୁଭିଲା
'ଖଡ଼ା-ଲେଉଟିଆଶାଗ'
ପୁଅ ଡାକ ଦେଲା, ''କେରାଏ ଏଥିରୁ
କିଣି ନେଇ ଯାଅ ଆଗ;
ଖଡ଼ା ଶାଗ ବଡ଼ି ରାଇ
ସଅଳ ଟିକିଏ କରିଦେଲେ ବୋଉ
ଯିବି ମୁଁ ପଖାଳ ଖାଇ ।''

ଚାକର ଧଡ଼ିଆ ପାକୁଳି ପାକୁଳି
ଚାଉଳିଆ ସିପା ମୁଢ଼ି
ଖାଉଁଦାଣୀ ଆଗେ ନରମେ କହିଲା
ଝୁଲାଇ ପରିବା ଝୁଡ଼ି
''ତାଲିକା ଟିକିଏ ଲେଖିଦିଅ ବେଗେ
ସଉଦା ଆସିବ ମାଆ,
ପୋଟଳ ଆଳୁ ତ ଝାଡ଼ଝୁଡ଼ାସବୁ
ଆଣିଥିଲି କାଲି ଯାହା
ଅଛି ଖାଲି ଗୋଟେ ଓଉ—''
ପାହାଚରୁ ପଡ଼ି ଛୁଆଟାଏ ତଳେ
ଭାସି ଯାଉଅଛି ଲୋହୁ ।

''ପୋଡ଼ାକନା ଭଲା ଆଣ୍ ବା ବକଟେ
ସଇଲା ଟୋ ପୁଅ କଥା
ବୁଢ଼ୀ ମଣିଷ ମୁଁ କେତେ ଆଡ଼େ ହେବି ?
ଦେଖିବୁ ଆଇଲୁ ମଥା—

ଆବୁଟା ମେତିକା ଫୁଲି ତ ଗଲାଣି
କଉଁକାଳେ ହେବ ଭଲ
ନ ନେଇ ଏ ଘଟ ଯମ ଯାହା ମତେ
କରୁଅଛି କଲବଲ ।''

ଘରଣୀ ଅଇଲେ ଏଣେ,
ପୋଡ଼ି ଯାଉଥିଲା ରସୁଣ-ବଘରା
ରଡ଼ନିଆଁ ଧାସେ ତେଣେ ।

''ବାବୁଚ ନା ଭାତ ଘଡ଼ିରେ ଯେ ଆସି
ବାଜିଲାଣି ସାଢ଼େ ଆଠ ।''
''କଅଣ କରିବି—ଜଳୁଚି କି ଟିକେ
ଦଶାଦିଆ ଓଦା କାଠ ?''

ଠାଆ ପାଣି କରି ବିଚଣା ହଲାଇ
ଡହଡ଼ ତିଉଣ ପାଶେ
ଓଉ ଆମ୍ବିଳୁଁ ଥାଳି କଢ଼େ ଢାଳି
କହୁଥିଲେ ମୃଦୁଭାଷେ—
''ଏକେତ ବାଧକା ପିଲା
ତହିଁରେ ଏ ଦଶା ଭୋଗିବାକୁ ରାତି
କି ଯୋଗରେ ପାହିଥିଲା !''

ପାନଖିଲେ ଚାକି ଦୁଆର ମୁହଁରେ
ଗୋଡ଼ ଦେଉଁ ଦେଉଁ ବାବୁ
ଯାଉଁଳି କୁଣିଆଁ ମୁଖ ଦରଶନେ
ଅକଲ ହୋଇଲା କାବୁ ।

ପକେଟରୁ ଝାଡ଼ି ଦୁଇଟି ମୁଦ୍ରା
ଦେଇ ବୁଢ଼ୀ ମାଆ କରେ
ନଥି ବିଡ଼ାଟାକୁ ସାଇକେଲେ ଲଦି
ବାହାରି ପଡ଼ିଲେ ଖରେ

ପୁଅଟିକୁ ଢାକି କୋଳେ
ବନ୍ଧୁ ଚରଚା କରିଲା ଭଉଣୀ
ଘଡ଼ିକେ ଇଲିଶି-ଝୋଳେ ।

ବରଷ ବରଷ ପ୍ରସବର ଫଳେ
ସିଝା ପଥ୍ୟ କରି କରି
ଭାଇଏ ଦେଖିଲେ 'ଅପା'ର ଚେହେରା
ହେଲାଣି ଖଡ଼ିକା ପରି ।

ଅର୍ଥ ଅଭାବେ ଓଷୁଅ ନ ମିଳେ
ଭିଟାମିନ୍ ଏ. ବି. ସି. ଡି.
ଡାକତର-ମୁଖୁଁ ଉପଚାର ଶୁଣି
ବୁଢ଼ୀ କହେ ଚିଡ଼ି ଚିଡ଼ି—
''ଜନମ କରୁଛ ଜାଣି,
ତୁଚ୍ଛାଟାରେ ଖାଲି ଚାଖୁଚ ଲୋ କିଆଁ
ବଇଦ ଇଲାଜ ପାଣି ?
ଶୁଣ୍ଠି ପିପଳୀ ଗୁଆଘିଅରେ ତ
ଅନ୍ତୁରି କାମ ବଢ଼େ
ଅଣଉଦିଆରୁ ବଢ଼ାଭାତ ଖୋଇ
ମାଆ ତା' ଛୁଆକୁ ଗଢ଼େ ।

ଆମ ଅମଳରେ ଦେଶୀ ହଳଦୀରେ
ଗୋଳିଦେଇ ରାଶିତେଲ
ପିଲା ଝିଲା ପିଛେ କଟିଯାଉଥିଲା
ତାଆଣିଆ ଖରାବେଳ ।

ଶାଗ ପଖାଳରେ ବଢ଼ି
ପେଟପୂରା କ୍ଷୀର ଦେଉଥିଲୁଁ ଆମେ
ପିଲାମୁହେଁ ଘଡ଼ି ଘଡ଼ି ।

କି ଅଭିଲା ପିଲା ଜନମ କରୁଚ
ଏବ କାଳକୁ ଲୋ ତୁମେ
କମରେ ଟିକିଏ ତାକତ ନାଇଁ ତ
ଥିଲା ଯାହା ଆମ ବୁମେ,
କହିଲେ ମୁହଁକୁ ଅଥାର ସଜାଡ଼ି
କଥାରୁ କାଢ଼ିବ ଖିଅ
ସୋନୋ-ପାଉଡର-ସାବିନିରେ କାହିଁ
ଉଧାଏ କଅଁଳ ଦିଅ ?

ଭଲା ସଟିଫୁତୁ ଆଣି
ଆହାର ମୁହଁରେ ପାହାର ଦଉଚ
ଗୋଳି ଗ୍ଲୁକୁଜୁ ପାଣି
ଟିକକ କାମରେ ଧକେଇ ପଡୁଚ
ଅସଲ ଏ ବୟସରେ
ଆମ ବୋହୂବେଳ କଟୁ ନଥିଲା ଲୋ
ଅଳସ କି ଅୟସରେ
ଧାନ-ଉଁଷା-କୁଟା ବିରି-ମୁଗ-ବଟା
ଅଟାପେଷା ବାରମାସ
ନିତି ଘଷିତଡ଼ା, କୂଅପାଣି କଢ଼ା
ଲିପାପୋଛା ରୋଷବାସ ।

ଆଜି ହେଲା ଯୁଗ ଭିନେ
ଏଇ ଘରେ ଆସି ଦଶଟା ବୋହୂର
କାମ କରୁଥିଲି ଦିନେ ।''



# ପୁତ୍ତଳି

ଦୋଳିରେ ଝୁଲଇ ଶିଶୁ ଅଧୀର ଉତ୍ସୁକେ
ହସି କଳ କଳ ଏଣେ ଚାହେଁ ମାତା-ମୁଖେ ।

ଜନନୀ-ସସ୍ନେହ ଦୃଷ୍ଟି ରହିଛି ନିବଦ୍ଧ,
ନେତ୍ର ଭରି କରେ ପାନ ସହ ଗଦଗଦ ।

ନିଜେ ସେ ଦେଖୁଛି ନିଜ ପ୍ରାଣାଧିକ ସୁତେ,
ଉଚ୍ଛ୍ୱସିତ ଚିତ୍ତପୁରୀ ବାତ୍ସଲ୍ୟ-ଅମୃତେ ।

ଚଳଲୋଳ ଚାନ୍ଦଟିଏ କାହୁଁ ଅବା ଖସି
କୋଳର ସରଗେ ଆସି ଖେଳେ ହସି ହସି ।

କେବେ ସେ କାନ୍ଦିଲେ ଦେଇ ପୁତ୍ତଳି ତା' କରେ
ହରଷେ ଦୋଳାଏ ମାଆ ପରମ ଆଦରେ ।

ସଲିଳ-ସିଞ୍ଚନ ସମ ଜ୍ୱଳନ୍ତ ଅନଳେ
କ୍ରନ୍ଦନୁଁ ନୀରବି ଶିଶୁ ହସେ ଉତ୍ତରଳେ ।

ଲିପ୍ତ ରହି ସ୍ରଷ୍ଟା ସଦା ସୃଜନ-ଆବେଶେ
ଲଭନ୍ତି ଅଶେଷ ତୃପ୍ତି ନିରେଖି ନିମେଷେ ।

ଚାରୁ ଚିତ୍ରାୟିତ ମହା ସୃଷ୍ଟ-ରୂପାୟନେ
ପ୍ରଚ୍ଛନ୍ନ ବିରାଟ ସତ୍ୟ ଏହି ଉପାୟନେ ।

ଦୁଃଖଦୈନ୍ୟ-ନିପୀଡ଼ନେ କାନ୍ଦେ ଯାର ପ୍ରାଣ
ଜୀବନ୍ତ ପୁତ୍ତଳି ତାରେ ବିଧାତାର ଦାନ ।



# ପ୍ରତିଘାତ

"ତେଣେ ପିଠୋଉ ହେଉଚି ଦରବଟା
ଆଲୋ କୁଆଡ଼େ ଗଲା କି ବଡ଼ବୋହୂ
ଏଣେ ଘର ଗୋଟାକର ବାର ଛଟା
ଆଜି ରାତି ହବାଯାଏ ପଡ଼ିଥାଉ !"

"ମୋର ଲେଖି ଦେଉଚି କି ଜୀବନଟା
ବିକି ଦେବାପାଇଁ ନିତି ଏହି ଘରେ
ଖାଲି କାମ-କାମ-କାମ ଦିନ ରାତି
ଆଉ କିଛି ନାଇଁ କ'ଣ ଜୀବନରେ !

ଏକେ ନାରୀ ଜନମଟା ତ ରଡ଼ ନିଆଁ
ତହିଁ ଗୃହ-ଜଞ୍ଜାଳ କିରାସିନି
ଯେବେ କଲମ ଧଇଲି ଶୁଣେ ଗାଳି
ତାକୁ ଛାଡ଼ିଲେ ବି ହୁଏଁ ଖିନି ଖିନି ।

ଲେଖା ସବୁ ନିଶା ତହୁଁ ବଡ଼ ନିଶା
ତା'ର ସୁଆଦ ଚାଖିଚି ଯିଏ ଥରେ
ସେ କି ସହଜରେ ତାକୁ ପାରେ ଏଡ଼ି
ଯେତେ ବାଧା ଆସୁ ପଛେ ଜୀବନରେ ?

ବଡ଼ ଛଟପଟ ସାରା ଜୀବନଟା
ବାର ଛିଟିକୁଟି କାମ ପ୍ରାଣ ଖାଏ
ସଦା ରୋଗ ଜଞ୍ଜାଳ ଅନଟନ
ତହିଁ କବିତାକୁ କାହିଁ ବେଳପାଏ ?

ଆଜି ପୁଅ ଦିହ କାଲି ଝିଅ ପେଟ
ଓଷା ବ୍ରତ ମଉଛବ ବାରମାସ
କାଲି କଲମର ଯେବେ ନୋହେ ଭେଟ
ବୃଥା ଭାବନାର ବାରବାଟୀ ଚାଷ ।
ଏ ତ ନ ଯୋଗାଏ ଆଉ ଦାନା ଜନା
ତେଣୁ ଉତ୍ସୁକ ହେବେ ପରିଜନ
ଟିକେ ଆଶ୍ୱାସ ଲାଗି ଜୀବନରେ
ତାରେ ମଣେ ମୁଁ ସବୁଠୁ ପ୍ରିୟଧନ ।

ଆଜି ଯିଏ ପଛେ ମତେ ଯାହା କହୁ
ମୁଁ ତ ନଈସୁଅ ପରି ବହିଯିବି
ଏଇ ରସଟିକ ପାଇଁ ଯେତେ ଝଡ଼
ସୁଖେ ହସି ହସି ସବୁ ସହିଯିବି ।

ସେ ମୋ ସବୁ ବେଦନାର ପ୍ରଲେପନ
ସେ ମୋ ସବୁ ଦୁଃଖର ଗଉରବ
ସେ ଯେ ରିକ୍ତ ନିଦାଘ ବନାନୀର
ନବ ମେଘ-ମହ୍ଲାର କଳରବ ।
ମୁଁ ଯେ ବଖାଣି ନ ପାରେ ଯେତେ ଖୁସି
ସିଏ ଢାଳିଦିଏ ମୋର ବୁକୁତଳେ
ଏକ ବତାସୀ ମୁହଁର ଶିଖାପରି
ମୋର କବିତା-ପ୍ରଦୀପ ଆଜି ଜଳେ ।''



# ମାଟିର ମଣିଷ

ନିଃସ୍ୱତାର ମୂର୍ତ୍ତି ଧରି
ଠିଆ ଯେ ଧରା ଆଗେ
ତାହାରି ଯୋଗେ ନୁଖୁରା ମାଟି
ହସଇ ଶ୍ୟାମ ରାଗେ ।

ଯୁଗଳ ତା'ର
ଶିରାଳ ହାତ
ଆକାଶେ ଟୋଳେ
ବିଶାଳ ଛାତ

ତାହାରି ଯୋଗେ ନିଖିଳ ପ୍ରାଣେ
ରକ୍ତକଣା ଜାଗେ ।

କଙ୍କାଳର ମୂର୍ତ୍ତି ଧରି
ଠିଆ ଯେ ଧରା ଆଗେ
ତାହାରି ଯୋଗେ ବଞ୍ଚି ରହେ
ସୃଷ୍ଟି କାଳେ କାଳେ
ନନ୍ଦନର ଗନ୍ଧ ଛୁଟେ
ସ୍ୱର୍ଣ୍ଣ କ୍ଷେତ ମାଳେ ।

ତାହାରି ସ୍ୱେଦ
ରକତ ଦାନ
ବଢ଼ାଏ ଦେଶ
ଜାତିର ମାନ

ତାହାରେ ଦେଖି ଅଳସ ରବି
ଉଠଇ ପ୍ରାଚୀଭାଗେ

କଙ୍କାଳର ମୂର୍ତ୍ତିଧରି
ଠିଆ ଯେ ଧରା ଆଗେ ।

ଚକିତ ହୁଏ ନିଦାଘ ଦେଖି
ଦକ୍ଷ ଯାର ପାଣି
ବରଷା ତା'ରେ ପ୍ରଣତି ବାଢ଼େ
ବିଜୁଳି-ହସ ଟାଣି ।

ତରୁଣ ଶୀତ
ପକାଇ ପାଦ
ଦିଅଇ ଯା'ରେ
ଧନ୍ୟବାଦ
ପରଶେ ତା'ର ଧରଣୀ-ଭାଲ
ହସଇ ସୁନା ପାଗେ
କଙ୍କାଳର ମୂର୍ତ୍ତି ଧରି
ଠିଆ ସେ ଧରା ଆଗେ ।

ଜୀର୍ଣ୍ଣ ତା'ର କୁଟୀର ଉରେ
ବତାସ ବାଆ ଦେଖି
ଜାତକେ ତା'ର ବିଧି କି ଚିର
ବିପାକ ଅଛି ଲେଖି ?

ପଉଷ ପ୍ରାତ-ପଦୁଅଁ ପରି
ବାଧକା ଶିଶୁ ବକ୍ଷେ ଧରି
ଗୃହିଣୀ ତା'ର ଦେବତା-ପଦେ
ଆୟୁଷ ଖାଲି ମାଗେ
କଙ୍କାଳର ମୂର୍ତ୍ତି ଧରି
ଠିଆ ସେ ଧରା ଆଗେ ।

ଲୋତକେ ବୁଡ଼ି ହାସ୍ୟ ଯେହୁ
ଫୁଟାଏ କୋଟି ମୁଖେ

ଦୁର୍ଗତିର ଶଲ୍ୟ ସଦା
ବାଜଇ ତା'ରି ବୁକେ ।

ଜଗତ ହିତେ ପ୍ରଦୀପ ଭଳି
ଜୀବନ ଯେହୁ ଦିଅଇ ବଳି
ସେ ପାଇଁ କିରେ ଯେତେ ଦୁଃଖ
ପଡ଼ିଲା ତା'ର ଭାଗେ
କଙ୍କାଳର ମୂର୍ତ୍ତି ଧରି
ଠିଆ ସେ ଧରା ଆଗେ ।

□ □

## ନିଧି-ମଲିକ

ଶନିବାର ବଡ଼ି ଭୋର୍
ତୋଫାନ କହେ ରାଜ୍ୟ ମୋର
ଘୋଳେଇ ହେଲାଣି ମେଘର ଡେଣା
ତଥାପି ବର୍ଷା ଜିଦିଖୋର...

ଆମ ଗାଆଁର ନିଧି ମଲିକ
ଉମର ହେବ ଅଶୀ
ଶୁଆସ ରୋଗେ ମାସରେ ଅଧେ
ଟାଣଇ ଯମ ରଶି ।

ଦିହଟି ସିନା ନଳିତା ଖାଡ଼ି
ଅପାର ହାଡ଼-ଗୁଣ
ମରମ ତା'ର ନ ଝୁଣେ କେବେ
ଦୁର୍ଭାବନା ଘୁଣ ।

ଅଫିମ ଯାହା ଜୀବନ-ମାୟା
ତୁଟାଇ ପାରି ନାହିଁ
ନଇଲେ ବୁଢ଼ା କେଉଁ କାଳରୁ
ଧରନ୍ତାଣି କାହିଁ !

ପୁରୁଖା ସେହି ପୋରିହା ଛାତି
କହୁଛି ଯୁବା କଥା
ଦ୍ୱିତୀୟ ଦଫା ଟିରିଲା ତା'ର
ବଡ଼ ଉଲୁକୁ ମତା ।

ଗଳାରେ ଛୁରୀ ଯାଇଛି ମାରି
ଭେଣ୍ଡାପୁଅ ତା'ର
ନିରିମାଖୀ ତା' ବିଧବା ଝିଅ
ବୁଲଇ ବାର ଦ୍ୱାର ।

ଚିତେଇ ହୋଇ ଶୋଇଛି ଘର
କବାଟ ନାହିଁ—ତାଟି
ଫାଆଁ ଗାଳି ଦେଇଛି ଫାଟ
ଆଁ ଆଁ କରି ମାଟି ।

ଦୋକଡ଼ି କଣେ ରହିଛି ଠିଆ
ଘଷିର ଚେକା ଗଦା ।
ଛତାଟି ପରି ତାଳ ବାଉଙ୍ଗା
ହୋଇଛି ଅଗେ ଲଦା ।

କୁଡ଼ିଆଟିର ସଙ୍ଖାଳି ତା'
ଆଟିକା ବାଉଁଶିଆ
ପିଢ଼ାରେ ଯେତେ ଶୋଇଛି ପାଣି-
କଖାରୁ ପାଉଁଶିଆ ।

ମସିଣା ବିନା ଦେଖି ନି ବୁଢ଼ା
ତୋଷକ ଜୀବନରେ
ବାଘ ପରାୟେ ମାଘର ଶୀତ
ହେଁସକୁ ତା'ର ଡରେ ।

ପଥୁରି ସବୁ ବାସନଯାକ
ହେଲାଣି ଅଧେ ରଦି
ପିନ୍ଧା ତା'ର ଦି'ମୁହଁ ସିଆଁ
ମଳି-ଚିକିଟା ଖଦି ।

ଦୋକତା ବିନା କଳକୁ କେବେ
ନ ଜୁଟେ ପାନ ଖିଲ
ସାଙ୍ଗ-ସାଥୀ ଜୀବନେ ତା'ର
ଘର ଓ ଧାନବିଲ ।

ତଥାପି ଦିନେ ଦେଖିନି କେହି
ବିରସ ସେହି ମୁହଁ
ନିଜନେ ବସି ନିଗାଡ଼ିବାରେ
ଆଖିରୁ ଟୋପେ ଲୁହ ।

ଭକତ କବି 'ଭୀମାଭୋଇ'ର
ଚଉତିଶାର ଗୀତ
ସନ୍ଧ୍ୟା ଆଉ ସକାଳ ତା'ର
କରଇ ଆମୋଦିତ ।

ବାରିଟି ଖାଲି ପୂରିଛି ତୁଚ୍ଛା
କଣ୍ଟି ନଟି ବଣେ
ତଥାପି ସେହି ଡ଼ିହକୁ ବୁଢ଼ା
ସ୍ୱର୍ଗପରି ମଣେ ।

ଅଗଣା ଆଗ ସଜନା ଗଛ
ଯୋଗାଏ ନିତି ତୃଣ
ପୋଷଣାହାରୀ ଗାଈଟି ଦିଏ
ଘରକୁ ତେଲ ଲୁଣ ।

ରାତିରେ ସେହି ସପନ ତା'ର
ଦିନରେ ଜପାମାଳି
ଦିହରୁ ଯାଏ ଚେନାଏ ତାକୁ
ଦେଲେ କେ ପଦେ ଗାଳି ।

ରୋଗରେ ଯେବେ ତୋରାଣି ଘାସ
ନ ଥାଏ ସିଏ ଛୁଇଁ
ଚିନ୍ତାରେ ତା' ଅନ୍ତନାଡ଼ି
ସେଦିନ ହୁଏ ଦୁହିଁ ।

କଳିହା ନାତି- ନାତୁଣୀ ପରି
କୁକୁଡ଼ା ଚାରି ହଳ
ନିଛାଟ ଡିହେ ଥାନ୍ତି ରଚି
ନିରତେ କୋଳାହଳ ।

ଅଭାବେ ପଡ଼ି କୁଟୁମ ଛାଡ଼ି
ଛାଡ଼ି ବା ବିଲ ଚାଷ
କିଏ ସେ କେତେ ନ ଯାନ୍ତି ଟି
ଗାଆଁରୁ ପରବାସ ।

ନିଧି ମଳିକେ- ଦିହକ ଗଲା
ଏଇ ଜନମ ଗାଏଁ
ହାତେ ସେ ଜିଭ କାମୁଡ଼ି ଦିଏ
ଦୂର ବିଦେଶ ନାଏଁ ।

କହଇ ସିଏ— "ଜନମ ମାଟି
ରଖିବ ମୋର ପ୍ରାଣ
କି ବିଦେଶ କି ଚାକିରି
ବାହୁରେ ଥିଲେ ଟାଣ ।"

ଶ୍ରାବଣ ମାସ ବଡ଼ିଭୋର୍
ବର୍ଷା ପଡୁଛି ବଡ଼ ଜୋର୍
ଭଜନ ଗାଏ ନିଧି ମଳିକ—
"ରେ ମନ ! କହୁ ସବୁ ମୋର ।"
x x x

ରାମ ନାମରେ କୁହାଟ ଶୁଣି
ଘାବରା ହେଲା ଗାଆଁ
ବକ୍ଷ ତଳେ ଚାଉଁକା ପରି
ଲାଗିଲା ନିଧି ନାଆଁ ।

କହିଲା କିଏ— "କାଆଲି ତାକୁ
ଭେଟିଛି ବିଲ ହାଟେ"
କିଏ କହିଲା— "ସୁଖରେ ବୁଢ଼ା
ଗଲା ସରଗ ବାଟେ ।"

ବୁଡ଼ିଛି ନିଧି- ମଳିକ କୁଳ
ଡିହେ ତା' କେହି ନାଇଁ
ଛଡ଼ାଟି ପରି ସଜନା ଗଛ
ରହିଛି ଖାଲି ଚାହିଁ ।

ପଉଷେ ଧୋବ ଫୁଲରେ ଯେବେ
ଡାହି ତା' ପଡ଼େ ଭାଜି
ଫୁଲ ଚୁଇଁର ଗାଆଣେ ସେହି
ଗୀତଟି ଉଠେ ବାଜି ।

ଅଟକି ଗଲା–            ବାଟୋଇ ଆଜି
ଘଡ଼ିଏ ସେଇ ଥାନେ
"କି ବିଦେଶ            କି ଚାକିରି"
ଶୁଣେ ସେ ଥିର ତାନେ ।



# କନ୍ୟା ବିଦାୟ

ଆସନ୍ନ ଉଷସୀ ଲଗ୍ନ, ବୁଡ଼ିଅଛି ବେଳା
ରଙ୍ଗାୟିତ ରୁଚିଭାରେ ମେଘ ଭେଳା ଭେଳା
ଓହଳି ପଡ଼ିଚି ଦୂର ଶୈଳ ସାନୁ ତଳେ
ବାଜିଲା ଉତ୍ସବ ଭେରୀ...ପାଦ ନାହିଁ ଚଳେ ।
ସାରା ପରିବାର-ବୁକୁ ବେଦନା-ଜର୍ଜର
ସବୁରି ନୟନଧାରେ ଆଷାଢ଼ ନିର୍ଝର ।
କଲ୍ୟାଣୀ କନ୍ୟାର କ୍ଷୁବ୍ଧ ମ୍ଳାନ ମୁଖ ଚାହିଁ
ପିତା କହେ 'ମାଆ ମୋର' ମାତା କହେ 'ହା-ଇ' ।

ପ୍ରାବୃଟର ମଧ୍ୟଭାଗ-ପ୍ରଥମ ଲଗନେ
କନ୍ୟାର ବଢ଼ିଚି ବିଭା ଅଶେଷ ବିଘନେ ।
କରିଛନ୍ତି ପିତାମାତା ଯାରେ ନିର୍ବାଚନ
ଆଦରିଣୀ କନ୍ୟାର ସେ ଚିର ଶାନ୍ତିଧନ ।

ନୀରବିଛି ମାଙ୍ଗଳିକ ବେଦୀର ମଣ୍ଡପେ
ହସ୍ତଗ୍ରନ୍ଥି ପରେ । ପିତା କନ୍ୟାଟିରେ ସମ୍ପେ
ନବୀନ ଜାମାତା କରେ, ଆର୍ଦ୍ର ନେତ୍ରପିତା
କଣ୍ଠ ରୁଦ୍ଧ—ଅଶ୍ରୁ ଖାଲି କହେ ଯାହା କଥା;
ସ୍ନେହଶୀଳା ତନୟାରେ ବୁକୁ ପରେ ଥାପି
ଦିଅଇ ଆଶ୍ୱାସ ଗୁରୁ ବ୍ୟଥାଭାର ଚାପି ।

ମତିକ୍ଷିପ୍ତା ଜନନୀର ଉଦ୍‌ବେଳ ନୟନ
ନ ମାନେ ପଣତ ପୋଛା—ନ ମାନେ ଯେସନ
ଶତ ବାଲିବନ୍ଧେ ଭରା ଶ୍ରାବଣର ନଈ—
ବୁକୁଫଟା ଦୀର୍ଘଶ୍ୱାସ ଛୁଟେ ରହି ରହି ।

ବିଦାୟର ଆୟୋଜନେ ବନ୍ଧୁ ପରିଜନ
ମୁଖରିତ କରୁଛନ୍ତି କ୍ଷୁଦ୍ର ପୁରାଙ୍ଗନ ।
ପରିବାର ମଧ୍ୟେ ଯେହୁ ଏକାନ୍ତ ଆତ୍ମୀୟା
ଅଚେତନ ମୂର୍ତ୍ତି ସମ ରହିଛନ୍ତି ଠିଆ ।

ସ୍ମୃତିପଟେ ଉଇଁ କନ୍ୟା ବାଲ୍ୟତ ଜଞ୍ଜାଳ
ଘୋଟିଛି ବର୍ଷୁକ ମେଘ ନେତ୍ରେ ମାଳମାଳ ।
ନିଭୃତ ପ୍ରକୋଷ୍ଠେ ମାତା ବୁଡ଼ି ଅଶ୍ରୁଧାରେ
ପିଆନ୍ତି ନବାତପଣା—କହି ଦୁହିତାରେ
"ପର ଘରେ କିଏ ଆଉ ବେଳ ଜାଣି ମାଆ,
ବୁଝି ତୋ ପେଟର କଥା କହିବ ଲୋ 'ଖାଆ' ।"

ବାଜିଲା ବିଦାୟ ଶଙ୍ଖ । କ୍ରନ୍ଦନର ଶବ୍ଦ
ସନ୍ଧ୍ୟାର ଗଗନ କଲା ନିମିଷକେ ସ୍ତବ୍ଧ ।
ମର୍ମଫଟା ସେ ବିଯୋଗ କି ବେଦନା ଦିଏ
ବୁଝିବ ସେ ଏକା ଯିଏ ନିଭାଇଛି ଦିହେ ।

ପୁରକାନ୍ଥେ ପୂର୍ବୁ ଯହିଁ ପଡ଼ୋଶୀ ବନିତା
ଆଙ୍କିଥିଲେ ସଯତନେ ବିଭା କମ ଚିତା
ତଳେ ତାର ବସୁଁ କନ୍ୟା କାନ୍ତ ବାମପାଶେ
ଗଅଁଠି ସବୁରି କାନି, ଅବରୁଦ୍ଧ ଭାଷେ
କରୁଣ ବିଦାୟ ଛନ୍ଦେ ଉଠଇ ବାହୁନି
ଯେତେ ହସ୍ତ ଦେଲେ ତୁଣ୍ଡ ନ ହୁଅଇ ତୁନି ।
ଚାଲବତା ସମାଜେ କି ଝଡ଼ ଉପହାସ ?
ଗରଜଇ କଣ୍ଠେ ଏ ଯେ ଭୋହୁଅ ବତାସ !
ଚାହୁଁଚାହୁଁ ଛୁଟେ ଯାନ ନିର୍ମମ ଫୁତ୍କାରେ
ଅବହେଳି ନିଷ୍ଫଳକ ଶତ ଆଖିଧାରେ
ଉତ୍ତରୀ ଶାସନେ କନ୍ୟା ରହେ ଅଣାୟତ୍ତେ
ଝରାଇ ଲୋତକ ଧାର; ଝୁରି ଅବିରତେ ।

ବହୁଦୂରେ ରହିଲାଣି ଗୃହ କାହିଁ ଏବେ
ଭାଳଇ ମାନସେ କନ୍ୟା—କିଏ ଆଉ ନେବେ
ବାପମାଆ ପରି ତତ୍ତ୍ୱ ଦୂର ମଫସଲେ
ଜନମଟା ଯିବ ସିନା ମହା କଳବଳେ ।
ହୀନିମାନୀ ଝିଅ ଜନ୍ମ, ରୁଆ ଗଛ ପରି
ଛାଡ଼ି ନିଜ ଜନ୍ମମାଟି—ଭାଗ୍ୟ ସେ ଆଦରି
ଭୋଗେ ଦିନେ ପରଗୃହ ଅନ୍ଧ-କାରାଗାର
ବିସୋରି ତା ମଧୁମୟ ଜୀବନ-ଦୁଆର ।

ଆକାଶେ ଦମ୍ଭୋଳି ଡାକେ ଘନ କୃଷ୍ଣ ମେଘେ
ଖରତର ଗତି ରଚି ବେଳୁଁ ବେଳ ଏବେ ।
ଧାଇଁଚି ଆଗ୍ନେୟ ରଥ ଖର ଊର୍ଦ୍ଧ୍ୱଶ୍ୱାସେ
କଠୋର ଘର୍ଘର ରବେ । ତାମସୀ ବତାସେ
ପଥଧାରୁଁ ଭାସିଆସେ ଚୋରାଫୁଲ ବାସ
ବ୍ୟଥା ନାହିଁ ଦିଏ ତାରେ ଭୋଗ-ଅବକାଶ ।

ଗ୍ରୀଷ୍ମ-ଦାବ-ବିଶଙ୍କିତା ବଲ୍ଲରୀଟି ପରି
ଆସନ୍ନ ଭବିଷ୍ୟ ସ୍ୱପ୍ନେ ଅଧୀରେ ଶିହରି
ଆନତେ ଭାଳଇ କନ୍ୟା ପୋଛି ଲୁହଧାର
ତା'ପଥ ଚାହିଁଚି କେନ୍ହେ ଅଚିହ୍ନା ସଂସାର
ଆବେଶ-ବିହ୍ୱଳ-ନେତ୍ରେ, ଯାର ଶୁଷ୍କ ମାଟି
ବିନା ପଙ୍କେ ବାରମାସ ଚାହିଁଥାଏ ଫାଟି ।

ଶାଶୁ ଯାଆ ନଣନ୍ଦର ପୁରୁଷ ଶାସନ
ପଡ଼ୋଶୀଙ୍କ ବ୍ୟଙ୍ଗହାସ, ବିଦ୍ରୂପ ବଚନ
ସାମାଜିକ ଟେକ ପାଇଁ ଲୁବ୍‌ଧ ସମାଜର
ନିର୍ମମ ତାଡ଼ନା, ଆହା ନକଲେ ପଥର
କୁସୁମ-କୋମଳ-ପ୍ରାଣ, କେନ୍ହେ ହାୟ ନାରୀ
ଲାଞ୍ଛନାର କଷାଘାତୁଁ ହୋଇବଟି ପାରି ?

ଭାଳୁ ଭାଳୁ ଉଛୁଳାଏ ତୀବ୍ର ବ୍ୟାକୁଳତା
ରୋଦନ-ଆରକ୍ତ ବେନି କ୍ଳାନ୍ତ ନେତ୍ରପତା ।

ତିମିର-ଗରଭେ ଦିଶେ ବିଦାୟ ବେଳାର
ବେଦନା-ବିକ୍ଷୁବ୍ଧା-ମାତା-ଗଳଦଶ୍ରୁଧାର ।
କୋଟି ଯାତ୍ରୀ କୋଳାହଳେ ବାଜୁଅଛି କାନେ
ଡିଙ୍କିର ପାହାର ପରି ନିଶି ଅବସାନେ–
"ପର ଘରେ କିଏ ଆଉ ବେଳ ଜାଣି ମାଆ,
ବୁଝି ତୋ ପେଟର କଥା କହିବ ଲୋ 'ଖାଆ' ।"

ଦୁର୍ଲ୍ଲଭ ମାତାର ସ୍ନେହ ବତ୍ସଳ ହୃଦୟ
ସୃଷ୍ଟି ତହିଁ ପାଳଟିଛି କି ଅମୃତମୟ !
ଝରିଛି ବିନ୍ଦୁଏ ତହୁଁ ଜୀବନରେ ଯାର
ସକଳ ଆନନ୍ଦ-ସ୍ୱପ୍ନ ସଫଳ ତାହାର ।



# ଯାତ୍ରାପଥେ

ଅପ୍ରସର ପଲ୍ଲୀ ପଥେ
କାନ୍ଦିଉଠେ ତୂରୀ ଥରିଥରି
ପିତୃଗୃହ ଜନ ଦେଖି
ନବ ବଧୂ ବାହୁନିଲା ପରି ।

ମଧୁର ମିଳନେ ସୁଖ–
ଅଶ୍ରୁସମ ନେତ୍ର-ପଲ୍ଲବର
ମେଦୁର ଅମ୍ବର ତଳୁଁ
ନବ ବୃଷ୍ଟି ଖସେ ଝରଝର ।

ପ୍ରାବୃଟର ମୁଞ୍ଜରିତ
ତରୁବୀଥି ପଥ ବେନି ଧାରେ
ମାତିଚି ମର୍ମର ଗାନେ
ବିଧୁନିତ ଅଳସ ବେଳାରେ ।

ମାତୃକୋଳେ ହାସ୍ୟ ମୁଖ
ଚଳଲୀଳ ମୁଗ୍ଧ ଶିଶୁ ଭଳି
ବସୁମତୀ-ବକ୍ଷାଧାରେ
ଢଳିଢଳି ଖେଳେ ଧାନତଳି ।

ବାରିଦ-ଛବିଳ ଦୂର
ଦିଗନ୍ତର ସ୍ନିଗ୍ଧ ଶ୍ୟାମ ସୀମା
ବକାଳିକାମାନେ ମଣ୍ଡି
ହସେ କମ୍ର ନିର୍ବାକ୍ ନୀଳିମା ।
ଆବୋରି ସର୍ପିଳ ପଥ
କଟିବିମ୍ବେ ଶ୍ୟାମ-ଦୂର୍ବା-ବାସ
ଦୂର ଏଇ ଗାଆଁ ମୁଣ୍ଡେ
ବିଶ୍ରାମର ମାରେ ଦୀର୍ଘଶ୍ୱାସ ।

ଏ ଜନ ବିରଳ ପଥେ
ଶକଟରେ ମନ୍ଥର ଚଳନ
କରିଛି ନିର୍ଭୟ ଅତି
ପତିଗୃହମୁଖୀ ବଧୂମନ ।

ଏକାନ୍ତ ନିଭୃତ ଦେଖି
ସ୍ଥିର ନେତ୍ରେ ରହିଚି ଅନାଇ
ନବ ପ୍ରୀତି କୌତୂହଳେ
ନବ ବର ସନ୍ଦର୍ଶନ ପାଇଁ ।

ଉରୁଣା ଉଡ଼ାକୁଁ ତାର
ଶାନ୍ତ ବେନି ଅନିମେଷ ଆଖି
ଧ୍ୟାନୀ ବକଟି ସମ
ଉତ୍କଣ୍ଠିତେ ରହିଅଛି ଚାକି ।

ନିମେଷ ଦର୍ଶନ ମୂଲ୍ୟ
କରି ନୁହେଁ ବାକ୍ୟେ ନିରୂପଣ
ସ୍ମୃତି-ଗନ୍ତାଘରେ ଜ୍ୟୋତି
ଝଟକଇ ଯାର ଆଜୀବନ ।

ଢାଳେ ପ୍ରିୟ-ଗୁଞ୍ଜରଣ
କାନେ ଯେବେ ମଧୁର ମଦିରା
ମଦିରହୃଦୟା ବଧୂ
ଅଜାଣତେ ହୁଅଇ ଅଧୀରା ।

"ରହ ଟିକେ ଶଗଡ଼ିଆ–
ଗହ୍ଲୁଁ ଦି'ଟା ତୋଳେଁ ଜାମୁକୋଳି"
ଚମକି ଚାହିଁଲା ବଧୂ
ତରୁ ସାରା ଖେଳୁଅଛି ଦୋଳି–

ଲୋଭନ ସ୍ତବକରାଜି
କଳା କଳା ମିଷ୍ଟରସଭରା
ସଫଳ କୋମଳ ଶାଖେ
ଲାଗି ବର୍ଷା ପହିଲି ଅସରା ।

ସାୟାହ୍ନ ଘନାଇ ଆସେ
ତଥାପି ତ ଛିଣ୍ଡେ ନାଇଁ ପଥ
ଆସନ୍ନ ବୃଷ୍ଟିରେ ଚାହିଁ
ଗରଜଇ ନିକଟ ପର୍ବତ ।

ଟପରଟପର ସ୍ୱନେ
ହସେ ଯେବେ ତୋଟା ବିଲ ବନ
ମିଳନ-ପିପାସା ପ୍ରାଣେ
ଘନଘନ କରଇ ଉଛନ୍ନ ।

ବଜର କୁହାଟେ ଦୂରେ
ବିଜୁଳି ଯେ ମାରେ ଚାଇଁ ଚାଇଁ
"ସୃଷ୍ଟିର ସେ ତୀରେ କି ରେ
ଗାଆଁ ତୁମ-ବାଟ ଛିଡ଼େ ନାହିଁ ।"
ଉତ୍ତରଇ ଶଗଡ଼ିଆ
ଅର୍ଥହୀନ ମୃଦୁ ହସ ହସି
"ଜଣାପଡ଼େ ବେଶୀ ବାଟ
ସାରା ଦିନ ଏକଠାବେ ବସି ।

ଏଇ ତ ଧରିବା ମୁଣ୍ଡ
ବିଲ ଖଣ୍ଡେ ହୋଇଗଲେ ପାରି
ଶଙ୍ଖର ଶବଦ ଶୁଣି
ଚାହିଁବେଣି ତେଣେ ପୁରନାରୀ ।"

ତରତର ହୁଏ ରବି
ମିଶିବାକୁ ଦୂର ଚକ୍ରବାଳେ
ଡକାଡକି ନାରୀସ୍ୱର
ଦାଣ୍ଡ ଘାଟେ ଶୁଭିଲା ଏକାଳେ—

"ଅଇଲେଣି ବରକନ୍ୟା
ଏଇଖିଣି ହବ ବନ୍ଦାପନା"
କୁସୁମିତ ବଧୂପ୍ରାଣେ
ଉଛୁଳଇ ମିଳନ ମୂର୍ଚ୍ଛନା ।



# ବଧୂପ୍ରବେଶ

ବକ୍ଷେ ଢାକି ଶିଶୁ କେହୁ
କେବା ପୁଣି ଧରି ସଞ୍ଜକନା
କେ ଅବା କଳସୀ-କାଖେ
ଆସିଅଛି ଦେଖି ବନ୍ଦାପନା ।

ସମ୍ମୁଖ ଦେହଳୀ ତଳ
ହୋଇଅଛି ବିତାନେ ଶୋଭିତ
ଉଜ୍ଜ୍ୱଳ ବିଦ୍ୟୁତ ସ୍ରୋତେ
ଭାସେ-ବୁଡ଼େ ନବବଧୂଚିତ୍ତ ।

ଏକାଳେ ଆସଇ ପାଶେ
ନାପିତୁଣୀ ଘେନି ଗୃହବାଳୀ
ଏକ କରେ ଦୂର୍ବାକ୍ଷତ
ଆନ କରେ ପ୍ରଦୀପଟି ଜାଳି !

ସମ୍ମିଳିତ କଣ୍ଠୋଦ୍‌ଥିତ,
ଶୁଣି ଶୁଭ ହୁଳହୁଳି ନାଦ
ଭୂତଳେ ନିବେଶେ ବଧୂ
ଅଳକ୍ତକ-ରେଖାୟିତ ପାଦ ।

ସାରା ପରିବାର ପ୍ରାଣ
ଆଜି ସତେ କି ଆନନ୍ଦେ ଭୋଳ
ସହସା ଏରୁଣ୍ଡି ବକ୍ଷେ
ଉଠିଲାକ ରହସ୍ୟ-ହିଲ୍ଲୋଳ ।

ରସିକା ନଣନ୍ଦ ଏବେ
ବନ୍ଧ ଭିଡ଼ି ଓଗାଳିଛି ବାଟ
ନ ନେଲେ ପାଉଣା ଶାଢ଼ି
ବସାଇବ ବୋଲାଣାର ହାଟ ।

ହତସ୍ରୋତା ନଦୀ ସମ
ବଧୂ ଏବେ ଦ୍ୱାରପାଶେ ଠିଆ
ଚରଣେ ବେପଥୁ ଜାଗେ–
ଦୁମୁଦୁମୁ ପଡ଼େ-ଉଠେ ହିଆ ।

ବସୁଁ ବସୁଁ ଧୀରେ ବଧୂ
ମାତୃକୋଳେ ଦୟିତର ପାଶେ
ସବୁରି ଉଜ୍ୱଳ ମୁଖ
ହସିଉଠେ ଅମିତ ଉଲ୍ଲାସେ ।

ସିଆଣୀ ଭାଉଜ ଏଣେ
ଖେଳାଉଛି ବେନିରେ କଉଡ଼ି
ଝମଝମ ବାଜେ ତାର
କୋଟିକମ ସବୁ ସୁନାଚୁଡ଼ି ।

ଥାଳିବୃତ ଦଧିଭାଣ୍ଡେ
ବଡ଼ ଯାଆ ଲୁଚାଇଛି ମୁଦି
ନିଃଶବ୍ଦେ ଆଣିବ ବଧୂ
ଥିଲେ ଏକା ଘରକଲା ବୁଦ୍ଧି ।

କୌଳିକ ପ୍ରଥାର ଏବେ
ବଢ଼ିଗଲା ଚରମ ପରୀକ୍ଷା
ଦେଖାଶୁଣା ଫଳେ ଯାହା
ବିଭା ଆଗୁଁ ହୋଇଥାଏ ଶିକ୍ଷା ।

ସ୍ୱତନ୍ତ୍ର ନାହିଁ ତ ଆଉ
ଏଥିପାଇଁ ପ୍ରହାର ଶାସନ
ଯୋଗ୍ୟତା ପରାସ୍ତ ହେଲେ
ନତ ହେବ ବଧୂର ବଦନ ।

ସରିଲା ସକଳ ପାଠ
ଦେଖିବାକୁ ବଧୂ ମୁଖଶିରୀ
ଧାଇଁଲେ ନାରୀଏ ଏବେ
ଜନତାର ଘନତାରେ ଚିରି ।

କାଣୀ ବିଲେଇର ସମ
କଣେଇ କେ ଚାହେଁ ଶୁଭ୍ର ଭାଲ
କେ ଦେଖେ ଚଞ୍ଚଳ ଭ୍ରୂରୁ
ସ୍ମିତ-ଫୁଲା ଫଡ଼ା ଓଉ ଗାଲ ।

ପୃଥୁଳ ନିତମ୍ବେ ପୁଣି
ଭଣ୍ଡାରେ କେ ଢାଳଇ ନଜର
ମନ୍ତବ୍ୟ ଝାଡ଼ିବା ପାଇଁ
ଗହଳିରେ ପାଏ ନାହିଁ ଡର ।

ଆଖି କେ ଛିଞ୍ଚାଡ଼େ ପାଦେ
ଅବା କେହି ଗୋଇଠିର ତଳେ
ଛଞ୍ଚାଣ ପରି କେ ଝାମ୍ପେ
ମେଘାୟିତ କବରୀ କୁନ୍ତଳେ ।

ପ୍ରତ୍ୟୁଷା ଘରଣୀ କେହୁ
ମନେ ମନେ କରଇ କଳନା
ଆଣିଅଛି ବାପଘରୁ
ବଧୂ କେତେ ସୁନାର ଗହଣା ।

ହିସାବରେ ନୋହି ତୁଷ୍ଟ
ଛୁଟିଆସି ଚିଲ ପରି ଖରେ
ବେକ ହାତ ଝିଙ୍କି ଝୁଣି
ବଧୂଟିରେ କୁଆବୁଆ କରେ ।

ଗାଆଁର ଖଲିପା ପରି
ମୁହଁ ମୋଡ଼ି କହେ ହାତ ଠାରି
"ଏ ଯେତେ ସୁନାର ସାଜ
ସବୁ ଫମ୍ପା-ବାଜେ-ଅଡ଼ିନାରି ।"

ବଜ୍ରର ପଡ଼ିଲା ପରି
ମର୍ମାହତା ହୁଅଇ ତରୁଣୀ
ନଇଁଯାଏ ମୁଣ୍ଡ ତାର
ବାପଘର ବୃଥା ନିନ୍ଦା ଶୁଣି ।

ଗହଳି ମଉଳି ଆସେ
ଖଟାମିଠା ବଙ୍କିମା ଛଟାରେ
ହସଇ ବାସର ରାତ୍ରି
ଆଷାଢ଼ର ନବ ଅଭିସାରେ ।

□ □

## ବାସର ରାତ୍ରି

ଥରଥର ସାରା ଅଙ୍ଗ ଦମଦମ ଛାତି
ହେଇତ ସମୀପେ ଠିଆ ପରାଣର ସାଥୀ ।

ନୁହନ୍ତି କେବଳ ସାଥୀ ବନ୍ଧୁ ଅବା ପ୍ରିୟ
ରିକ୍ତ ମୋ ଯୌବନ-ପାତ୍ରେ ସେ ଦିବ୍ୟ ଅମିୟ ।

ମୋ ନିଦାଘ-ହୃଦକୁଞ୍ଜେ ବସନ୍ତର କୁହୁ
ଯୁଗ ଯୁଗ ସହଯାତ୍ରୀ ସିଏ ଆଉ ମୁହିଁ ।

ପାନ୍ଥ ଆମେ ଧରଣୀର ତରୁଣିତ ପ୍ରାନ୍ତେ
କାମନାର ରୂପପୁରୀ ହସେ ଯା ସୀମାନ୍ତେ ।

ଲଭିଅଛୁ ଆକାଂକ୍ଷିତ ଗୌରବର ଧନ
ଆଶ୍ଳେଷର ଲତାୟିତ ନିବିଡ଼ ବନ୍ଧନ ।

ପାଶେ ଆସୁଥିଲେ କର ନେବାକୁ ଆଦରି
ସନ୍ତର୍ପଣେ ଅପଘନ ନାଚେ ଉର୍ମିପରି ।

ବକ୍ଷପୁଟେ ବନ୍ୟା ଛୁଟେ, ଚିତ୍ତୁଁ ତୁଟେ ଭୟ
ଗନ୍ଧାମୋଦେ କନ୍ଦସୁଖ ଲଭଇ ହୃଦୟ ।

ନ ପାହୁ ଏ ବିଭାବରୀ, ନ ଲିଭୁ ଏ ଦୀପ
ଅଙ୍ଗେ ଅଙ୍ଗେ ମଞ୍ଜରୁ ଗୋ ପ୍ରଣୟର ନୀପ ।

ଫେନ-ଶୁଭ୍ର ପୁଷ୍ପଶଯ୍ୟା ନବନୀ-ନିନ୍ଦିତ
ଦେଖୁଥାଉ ଲୀଳା ଆମ; ଶୁଣୁଥାଉ ଗୀତ ।

ମଳୟ ସୁଷୁପ୍ତି-ବନେ ହଜିଅଛି କାହିଁ
ଡାକନ୍ତା କୋକିଳ ଭଲା ଥରୁଟିଏ ପାଇଁ...
ଭୁଲିଛି ଆଷାଢ଼ ନଭ ଅଶନି କୁହାଟ
ସର୍ବଦିଗୁଁ ଅବରୁଦ୍ଧ ଉପଭୋଗ ବାଟ ।

କ୍ଷିପ୍ତର ପ୍ରଳାପ ଇଏ—
ନା-ନା-ନା
ପ୍ରାଣେ ଖାଲି ଜାଗେ ଏକ ଭ୍ରାନ୍ତ ଉତ୍ତେଜନା ।

ପ୍ରଣୟ କି ମାନେ ଏଇ ଅଳୀକ ବନ୍ଧନ
ସେ ଯେ ଏକ ଆତ୍ମାପ୍ରତି ଅନ୍ୟର ବନ୍ଧନ ।

ନମାରୁ ବିଜୁଳି ପଛେ ନ ବହୁ ବତାସ
ଏ ତୃଳୀତଳପେ ଖେଳୁ ପରିପୂର୍ଣ୍ଣ ହାସ ।

ସ୍ୱେଦ ଜରଜର ପଡେ ହୋଇ ଉଠୁ ଛାତି
ନ ପାହୁ ଏ ଆଷାଢ଼ର ବିଳସିତ ରାତି ।

ଆଜିର ନରମ ଓଠେ ସୁବାସିତ ପାନ
ଲଭିଛି ତା ଜନମର ଚରମ ସମ୍ମାନ ।

ଢାଳିଦିଏ ଅଙ୍ଗେ ଏଇ ବିନିଦ୍ର ପାହାନ୍ତି
କୁସୁମ-ଚନ୍ଦନ-ସିକ୍ତ ସୁଶୀତଳ ଶାନ୍ତି ।

ଏକପ୍ରତି ଆନର ଯେ ମଧୁର ଭର୍ତ୍ସନା ।
ପ୍ରାଣେ ପ୍ରାଣେ ଉପୁଜାଏ ହର୍ଷ ଉନ୍ମାଦନା ।

କ୍ଷୀଣାୟୁଷ ପିଲିସଜ୍ଞୁଁ ମରୁ ପଡେ ଭାତି
ନ ପାହୁ ଏ ନିଶୀଥିନୀ—ନ ଯାଆନ୍ତୁ ସାଥୀ ।

ନିଜଞ୍ଜାଳ ମନ ରହୁ ସୁଖସ୍ରୋତେ ଭାସି
ଏ ତଳପ, ଏ କୁସୁମ ନୋହୁ କେହି ବାସି ।

ସୃଷ୍ଟିର ପ୍ରଥମ ଦିନୁଁ ତୁଇ ମଧୁ ରାତି
ମିଳାଇ ନାହୁଁଟି କେତେ ଆଦରର ଛାତି ।

ତୋ ଲାଗି ସାର୍ଥକ ହର୍ମ୍ୟେ ସୁପାତି ଶୟନ
ମାଟିର କୁଟିରେ ମୃଦୁ ସୁଖ-ଆଳାପନ ।

ରୂପସୀର ଚୋରା ହାସେ ପ୍ରଣୟୀ-ସୋହାଗେ
ଢାଳୁ ତୁ ଦୁର୍ଲଭ ସୁଧା ସମ-ଅନୁରାଗେ ।

ଯୁଗ ଯୁଗ ବନ୍ଦନୀୟା ହେ ବାସର ରାତ୍ରି
ମୃତ୍ୟୁଞ୍ଜୟ ପ୍ରଣୟର ତୁଇଟି ବିଧାତ୍ରୀ ।

ସ୍ରଷ୍ଟାର ଅରୂପ ଛବି ହୁଏ ରୂପାୟିତ
ଲୀଳା-ରୂପାୟନେ ତୋର ଚିର ମହିମିତ ।

ସେ ସ୍ମୃତିର ମଧୁସ୍ୱପ୍ନ ହୃତ-ପ୍ରେମାକାଶେ
ଶରତ ଶୀତାଂଶୁ ସମ ଆଜୀବନ ଭାସେ ।

ଚିରନ୍ତନ ପ୍ରଣୟର ଏ ଶୁଭ ସ୍ମରଣୀ
କୁସୁମିତ କରୁ ଆମ ଜୀବନ-ସରଣୀ ।

ନୀରବ ଏ ନିଶାନ୍ତର ଅଶେଷ ଗୌରବ
ଖେଳାଉ ହୃଦୟ-କୁଞ୍ଜେ ଆଶାର ସୌରଭ ।



# ମାଟି କୁଡ଼ିଆ

ମତେ —
ମାଟିର ଏ କୁଡ଼ିଆଟି ଲାଗେ ଭାରି ଭଲ
ନିତି ଯହିଁ ଫୁଟେ ଶତ ଶାନ୍ତି-ଶତଦଳ ।

ଦୁନିଆର କଣମୁଣ୍ଡେ ଚାଖଣ୍ଡେକ ଡିହ
କଟିଲାଣି ଏଥି ସାତ ପୁରୁଷର ଦିହ ।

ପୁରୁଖା ମୁରବୀ ସମ ବୁଢ଼ା ଡେକା ବଟ
ଝଡ଼ର କବଳୁଁ ସଦା କରିଛି ଆପଟ

ଦୋହଲା ଏ ମଥାନରେ । ସମ୍ମୁଖ ଅଙ୍ଗନେ
ପ୍ରୌଢ଼ ଲମ୍ବ ନିମ୍ବତରୁ ମର୍ମର ନିସ୍ୱନେ ।

ବିଳସଇ ସମୀରଣେ ପହିଲି ଫଗୁଣେ—
ବିଶ୍ୱ ଯେବେ ବାସନ୍ତିକା—ମଧୁବେଣୁ ଶୁଣେ ।

ଶାଖେ ଶାଖେ ମୃଦୁଗନ୍ଧ ରୁଚିର ମଞ୍ଜରୀ
ହସିଉଠେ ଜ୍ୟୋସ୍ନାଯାମେ ସ୍ୱପ୍ନାବିଷ୍ଟ ପରି ।

କମଳା ଲେମ୍ବୁର ତରୁ ଉଭା ଏ ଯେ ପାଶେ
ପତ୍ରେ ପତ୍ରେ ଯାର ନବ ଯୌବନ ଆଭାସେ ।

ପାହାନ୍ତି ପବନେ ତାର ସ୍ନିଗ୍‌ଧ ମୃଦୁ ବାସ
ସ୍ୱପ୍ନାତୁର କରିଦିଏ ଶୟନ ଆବାସ ।

ସମ୍ମୁଖର ଆରପଟେ ଚିର ବାଲିଚରା
ବହଇ 'ସାଳନ୍ଦୀ' ଖର କଲ୍ଲୋଳମୁଖରା ।

ଶ୍ୟାମସୌମ୍ୟ ବନାନିକା ତୀରେ ତାର ଶୋହି
ବାସକସଜ୍ଜାଟି ପରି ହସେ ଧରା ମୋହି
ଋତୁର ପର୍ଯ୍ୟାୟେ । ଶିରେ ତାର ଶିଶୁ ଖରା
ପ୍ରଭାତେ ପକାଏ ସ୍ୱର୍ଣ୍ଣ କିରଣର ଝରା ।

କୁଟିର ଅଙ୍ଗନେ ଉଭା ତରୁଣୀ ତୁଳସୀ
ତଳେ ଯାର ସଞ୍ଜ ଦୀପ ଜଳେ ହସି ହସି

କିଶୋରୀ କନ୍ୟାଟି ସମ । ମୃଦୁମନ୍ଦ ବାତେ
ରଙ୍ଗଣୀର ଚୋରା ଗନ୍ଧ ଯୂଇସଙ୍ଗେ ମାତେ ।

ଶ୍ୟାମାଙ୍ଗୀ-ଶ୍ରବଣଭୂଷା 'ଗୋଖରା'ର ତୁଳ
ଦୋଳେ ଶତ ସ୍ତବକିତ ସ୍ୱର୍ଣ୍ଣ ଜହ୍ନିଫୁଲ ।

ଓଳିକରେ ଦରସ୍ଫୁଟ ହରଗଉରାର
ରକ୍ତିମ ପାଖୁଡ଼ା ଶିରୀ କେଡ଼େ ଚମତ୍କାର ।

ନବାଗତା କୁଳବଧୂ ଷୋଡ଼ଶୀ ସୁନ୍ଦରୀ—
ତାମ୍ବୁଳ-ରଞ୍ଜିତାଧରେ ଚାରୁ ସ୍ମିତ ସରି ।

ଦିନ ପରେ ଆସେ ରାତି ପରଦିନେ ଡାକି
ନିଭୃତ କୁଟୀରେ ବଧୂ-ଆଶାୟିତ-ଆଖି

ଚାହିଁ ରହେ ପ୍ରିୟ-ପଥ । ଅବକାଶ ଦିନେ
ଘରେ ତ ନ ଲାଗେ ମନ କାହିଁ ତାଙ୍କ ବିନେ ।

ସେ କି ସତେ ସ୍ମରୁଥିବେ ପଥେ ମୋର କଥା
ଭାଳୁ ଭାଳୁ ସିକ୍ତ ହୁଏ ନୟନର ପତା ।

କଳ୍ପନାରେ ଦେଖେ କାନ୍ତା ଜାଗ୍ରତେ ଭୋଳାଇ
ଏବୁଣ୍ଡି ସମୀପେ ପାଦ ଦେଲେଣି ତ ହେଇ !

ବକ୍ଷ ଏଣେ ଦୁମ୍‌ଦୁମ୍‌ କଇ, ସ୍ନେହବାକ୍ୟ-ଶେଳ
"ସଞ୍ଜ କି ଲୋ ଦବୁ ନାଇଁ—ଗଡ଼ିଯାଏ ବେଳ ।"

ଶାଶୁଙ୍କ ତାଗଦା ସ୍ୱରେ ଶିହରଇ ବଧୂ
ସନ୍ଧ୍ୟାର ତମସା ହସେ–କାହିଁ ହାୟ ବନ୍ଧୁ...
ସଂପଦର ଅଭିମାନେ ଏ କୁଟୀର ଛାତି
ଫୁଲି ନାହିଁ ଦିନେ ହେଲେ । ଯେତେ ଶୁକ୍ଳରାତି

କରିଅଛି ଜ୍ୟୋତ୍ସ୍ନାୟିତ ଏ ଅଙ୍ଗନ ତଳ
ସେ କଥା କହିବ ଏଇ ଶୁଭ୍ର ଫୁଲଦଳ ।

ଯୌବନ-ବସନ୍ତ-ବନେ ପ୍ରୀତିର ମାଧବୀ
ଧରିଅଛି ଏଇ ନବ ଦମ୍ପତିର ଛବି ।

ଧନୀଦୀନନିର୍ବିଶେଷେ ଯେଉଁ ସ୍ନେହ-ସୁଧା
ଦେଇଛି ସକଳେ ବାଣ୍ଟି ଜନନୀ ବସୁଧା–

ସେ ଅମୃତାଧାର ବିଶ୍ୱେ ଥାଏ ନିତ୍ୟ ଭରା
ମଧୁରତା ଯାର ପ୍ରାଣ କରେ ଆତ୍ମହରା ।

ଦାରିଦ୍ର୍ୟ ନିଘନ ସାଥୀ ଯାର ଏ ଭୁବନ
ଚିରନ୍ତନ ଧନୀ ସେହୁ ସୁଖ-ପ୍ରେମ-ଧନେ ।

ବିଷୟର ତୀବ୍ର ବିଷ ନାହିଁ ଯହିଁ ପଶି
ଅବତରେ ସେହି ପୁରେ ସ୍ୱର୍ଗ ହସିହସି ।



## ପହଲି ଚିଠି

ପ୍ରବାସୁଁ ପାଇବା ପତ୍ର ପ୍ରିୟ-କରାଙ୍କିତ
ଜୀବନେ ପ୍ରଥମ ଏଇ । ପୂରିଉଠେ ଚିତ୍ତ
କି ଅମୃତ ପୁଲକିତ ମଧୁର ହରଷେ
ଅମୂଲ୍ୟ ନିଧି ସେ ଅବା ରଙ୍କୁଣୀ-ଉରସେ ।
ଝଟକଇ ପ୍ରିୟାକରେ ସୁଦୀର୍ଘ ଲିପିକା

ଧରି ନିଶି-ପ୍ରଦୀପର ସ୍ଥିର ସ୍ନିଗ୍ଧ ଶିଖା ।
ସୁନୀଳ କାଗଜ ଦିଶେ କି ସୁନ୍ଦରତର
ରକ୍ତମସୀଚିତ୍ର ବର୍ଣ୍ଣେ—ନୂଆ ଶରତର
ନୀର ଆସ୍ତରଣ ଯଥା ରୂପର ସମ୍ପଦ
ଧରି ନବ ବିକଶିତ ଶତ କୋକନଦ ।
ହାସ ପରିହାସ ନବ ରସ ପରିବେଶ
ସବୁରି ହୋଇଛି ତହିଁ ପୂର୍ଣ୍ଣ ସମାବେଶ ।

ସୁରଭିତ ସ୍ନିଗ୍ଧ ସଜ ପଦ୍ମମଧୁ ପରି
ଲିପିର ଅନ୍ତରବାଣୀ ପଡ଼ିଅଛି ଝରି ।
ତୃପ୍ତ ନୋହେ ମନ ତିଳେ ପଢ଼ି ବାରବାର
ଧରଣୀ ଯେସନେ ଲଭି ପହିଲି ଆସାର ।
ଯୌବନର ସ୍ୱର୍ଣ୍ଣପାତ୍ରେ ଝରାଇ ମଦିରା
କରଇ ଲିପିଟି ତାରେ ଏକାନ୍ତ ଅଧୀରା—
ଚଇତି ବନାନୀ-ବୁକେ ବାସନ୍ତୀସୁନ୍ଦରୀ
ମଳୟର ସ୍ନେହସ୍ପର୍ଶେ ଉଚ୍ଛାଟିଲା ପରି ।

ପଢ଼ି ଯେତେ ଲେଉଟାଏ ନିମ୍ନେ ଢାଳି ମଥା
କ୍ଳାନ୍ତି ନାହିଁ ଅନୁଭବେ ତନ୍ଦ୍ରାଚ୍ଛନ୍ନ ପତା ।
ମୃଦୁ ସୁଗନ୍ଧିତ ପତ୍ର ବୁକେ ତାର ଢାକି
ସାର୍ଥକ କରଇ ସୁଖେ ନାସା ଆଉ ଆଖି ।
ବକ୍ଷେ ଯେବେ ଚହଲଇ ମଦିର ଆବେଶ
ଭାଳଇ, "ଯାମିନୀ ଆହା ନୁହନ୍ତା କି ଶେଷ ।"
ସୁମଧୁର ସମ୍ବୋଧନ ଦେଖି ଠାଏ ଠାଏ
ଲାଖିରହେ ଆଖି ତହିଁ ବହୁ ବେଳ ଯାଏ ।
ଲିପିଟି ଛାଡ଼ିଲେ ହାତ ଦ୍ୱନ୍ଦ୍ୱ ରଚେ ଆଖି
'ଇତି'କୁ ରହିଲା ଲେଖା କେତେ ଆଉ ବାକୀ ।

ଚାକ୍ଷୁଷ ଦର୍ଶନ ସେତେ ନ ଦିଏ ଉଲ୍ଲାସ
ଦିଅଇ ପ୍ରଥମ ଲିପି ଯେ ମଧୁ ଉଚ୍ଛ୍ୱାସ ।

ମାୟାର ଶୃଙ୍ଖଳ ପୁଣି କରେ ଦୃଢ଼ତର
ଦୂର ବିରହର ଏଇ ମୋହନ ମନ୍ତର ।
ଫୁଟିଉଠେ ପ୍ରିୟମୁଖ ଅକ୍ଷରେ ଅକ୍ଷରେ
ଢାକିରଖେ ପତ୍ରେ ମୁଗଧା ତୃଷିତବକ୍ଷରେ ।
କୌଶଳୀ ମାଳୀର ଯେହ୍ନେ ରଚନ ଦକ୍ଷତା
ସାଧାରଣ ଫୁଲେ ଦିଏ ନୂଆ ଢଙ୍ଗ, ତଥା
ସୁଲଭ ଏ କାଗଜର ଦୀର୍ଘ ଖଣ୍ଡମାନ
ଲଭିଅଛି ପ୍ରଣୟର ଅମୃତ ସମାନ ।

□ □

## ପଲ୍ଲିପ୍ରେମ

ବର୍ଷଣମୁଖର ରାତ୍ରି—ପାଶେ ନାହିଁ ପ୍ରିୟ
ଡେଣାମେଲା ଉଡ଼ା-ଝଡ଼େ ଫୁଲିଉଠେ ହିଅ ।
ଜନହୀନ ଅନ୍ଧକାର-ଘନ ଗ୍ରାମପଥ
ଚାହିଁଚି ମୁଁ ବାତାୟନେ । ଦୂର ପରବତ ।
ପ୍ରାବୃଟର ଏଇ ନବ ବୃଷ୍ଟି ଝରଝରେ
ଦିଶଇ ବିଜୁଳି-ହାର ଧରି ବକ୍ଷ ପରେ ।
ବୀରବେଶ ବିମଣ୍ଡିତ ନବ ଯୁବା ପରି
ବିରହ-ବିବଶ ବକ୍ଷ ଉଠେ ମୋ ଶିହରି ।
ରହି ରହି ବେଳେ ବେଳେ ଜାଗେ ପୁଣି ମନେ
ଏ ନିଶୀଥେ ବନ୍ଧୁ ମମ ବିନିଦ୍ର ନୟନେ
ଦେଖୁଥିବେ ଛବି ମୋର ଅନ୍ଧକାର ବୁକେ
ବ୍ୟଥାର ବଉଦ ଢାଙ୍କି ଶାନ୍ତ ସୌମ୍ୟ ମୁଖେ ।
ହାୟ !
କି ସଂପାତ ସତେ ! ବନ୍ଧୁତ୍ୱ ଜଞ୍ଜାଳ
ନବକାନ୍ତା ତେଜି ପ୍ରିୟ ଦୂରେ କାଟେ କାଳ ।

ଘୋର ଏ ବରଷା ରାତେ ବକ୍ଷେ ହାଣି ଛୁରୀ
ବଜାଏ ନିଠୁର ପବି ଭୈରବ ମହୁରୀ ।

ହେଉନ୍ତୁ ଦରିଦ୍ର ପକ୍ଷେ ଶ୍ରମଜୀବୀକୁଳ
ଆର୍ଦ୍ରକାଷ୍ଠେ ଯଥାତଥା ଫୁଟାଇ ତଣ୍ଡୁଳ ।

ଏ ନିଶୀଥେ ମାଟିତଳେ ବିରଚି ଶୟନ
ଦେଖୁଥିବେ ପ୍ରିୟା-ଅଙ୍କେ ଅନନ୍ତ ସପନ ।

ଦୟିତାର ରୁକ୍ଷ କେଶେ ସ୍ନେହସ୍ପର୍ଶ ବୋଳି
କହୁଥିବ ଦୋସର ତା ବକ୍ଷେ ତାକୁ ତୋଳି ।

"କରିଛୁଟି ମନେ, କାଲି ହାଟପାଳି, ଯାଇ
ନଡ଼ିଆ ମାଳପା ପାଏ ଆଣିବି ତୋ ପାଇଁ ।

ବୁଝୁଛୁ ତ ସବୁ ହାଲ–କି କହିବି ତତେ
ନାଲିଆ ବେଡ଼ାଣ ଖଣ୍ଡେ ଆଜି ପରିଯନ୍ତେ

ନ ପାରିଲି କିଣି, ତୋର ମନସାଧ ଯହିଁ
ନିଅଣ୍ଟିଆ ହେଲି ସଦା–କି କରିବି ସହି !

ସନିଆ ଗୋଦାମେ କେତେ ଭଳି ଭଳି ଶାଢ଼ି
ଦେଖି ଦେଖି ପ୍ରାଣ ଖାଲି ହୁଅଇ କଚାଡ଼ି ।

ପାରିବୁ କି ବୁଝି ତୁ ଲୋ ମୋ ମନ ଦରଜ
ଯିବାକୁ ବିଦେଶ ଗୋଡ଼ ନିତି ହୁଏ ସଜ ।

ଆଖି ଆଗେ ଦେଖୁ ନାହୁ ପରବାସେ ଯାଇ
ନ ପଠାନ୍ତି କେତେ ଚିଜ ଭୁଆସୁଣୀ ପାଇଁ

ଏଇ ଗାଆଁ ଟୋକାମାନେ । କାଲି ଯାର ହଳ
ଥିଲା ସାରା କୁଟୁମ୍ବର ଜୀବନ ସମ୍ବଳ

ସେ ଆଜି ପ୍ରବାସେ କରେ ଟଙ୍କାର ମଉଜ"
କହୁଁ କହୁଁ ଆଶ୍ଳେଷଇ ବନିତାର ଭୁଜ ।

କହେ ବଧୂ କଣ୍ଠେ ଭରି ସଂବେଦନ ଭାଷ
"ନ ଧର ହେ ତୁଣ୍ଡେ ପ୍ରିୟ ! ସେ ଦୂର ପ୍ରବାସ ।

ପରର ଗୋଲାମି ସତେ ଲାଗେ ଏତେ ଭଲ
ଛାଡ଼ି ଘର, ଗୋଠଗାଈ, କ୍ଷେତର ଫସଲ ?

ସହରୀ ତିରିଲା ପରି ନ ହୁଏ ମୁଁ ରଙ୍କ
ଦେଖିବାକୁ ଅଳଙ୍କାର ଶାଢ଼ି ଚକଚକ ।

'ଚମକ ଅଳତା' ଆଉ ଚାମେଲି ଅତର
ଏଥିରେ କି ପୂରେ ପେଟ, ଭରେ ପୁଣି ଘର ?

ଆପଣା କ୍ଷେତର ଧାନ ମୁଗ ଚଣା ବିରି
ଯା ସାଥେ କି ସରି କେବେ ବିଦେଶ ଚାକିରି ?

ଗୁହାଳେ ଛାଡ଼ଇ ହମ୍ବା ଯେବେ 'ଚାନ୍ଦ' ଗାଈ
ଭୁଲିଯାଏ ତୁମକୁ ମୁଁ ସତେ କ୍ଷଣ ପାଇଁ !

ପହିଲି ଶାରଦ ଧାନ ଆସିଲେ ଅମାରେ
ନ ଲାଗେ ତଳେ ମୋ ପାଦ ଆନନ୍ଦ ସମ୍ଭାରେ ।

ଆପଣା ଘରର ଲକ୍ଷ୍ମୀ ଉଜାଡ଼ି କେସନ
ପ୍ରବାସ ଯିବାକୁ କୁହ ବଳେ ତୁମ ମନ ?''

ଗରଜେ ଏକାଳେ ଯେବେ ଦମ୍ଭୋଳି-ଦାମାମା
ଚମକି ଦୟିତ-ଭୁଜ ଭିଡ଼ି ଧରେ ବାମା ।

କ୍ଷଣ ପରେ ମୁଖ ଟେକି କହେ ପୁଣି ''ପ୍ରିୟ !
କୋଳେ ତୁମ ମରିବାକୁ ଆଶୀର୍ବାଦ ଦିଅ

ଭିକ୍ଷା ମାଗେ କାଙ୍ଗାଳୁଣୀ ଏତିକି ଦେବତା !''
ଶୁଣି ପ୍ରିୟ ଜଡ଼ ସମ ଭୁଲେ ନିଜ ସତ୍ତା ।

ବିଦେଶ ସପନ ତାର ଯାଏ କାହିଁ ଭାସି
ରହି ରହି ବାହୁନଇ ଦୁରନ୍ତ ବତାସି ।

ଦାରିଦ୍ର୍ୟର ଖେଦଭାର କ୍ଷୁଦ୍ର ଶିରେ ବହି
କାହିଁ କେତେ ଦୂରେ ବନ୍ଧୁ ! ଅଛ ତୁମେ ରହି ।

କ୍ଷୀଣ କରି ଅନୁଦିନ ଜୀବନ-ପରିଖା
ହେବ ସିନା ଶେଷେ ଶୀର୍ଣ୍ଣ ସଳିତା ପରିକା ।

ବଡ଼ଛି ଏ ସୁନାମାଟି, ଏ ପାଣି ପବନ
କି ଅମୃତ ଭଲା ତହିଁ କରୁଛ ସେବନ ?

ନିଜ ମାଟି କୁଟୀର ଯେ ନିବିଡ଼ ମମତା
ପର ସ୍ୱର୍ଣ୍ଣ ସିଂହାସନ ହେବ କି ସମ ତା ?

ଦୂରତାର ସୀମାହୀନ ଏ ଯେ ବ୍ୟବଧାନ
ତା ମଧ୍ୟେ ପାଏ ମୁଁ ତୁମ ପ୍ରେମର ସନ୍ଧାନ ।

ଅନାବିଳ ସ୍ନିଗ୍ଧ ତାର ଶାଶ୍ୱତ ମୟୂଖ
ଭରିଦିଏ ଅନ୍ତରେ ମୋ ପରିପୂର୍ଣ୍ଣ ସୁଖ ।

କ୍ଷଣିକ ଏ ଜୀବନର ଦୀପ୍ତ ସତ୍ୟ ରେଖା
ସ୍ଥିର ସୌଦାମିନୀ ସମ ଦିଏ ଆସି ଦେଖା ।

ଅନିତ୍ୟ ଏ ସଂସାରର ନିତ୍ୟ ଭଙ୍ଗୁରତା
ତାକଇ ଅପୂର୍ଣ୍ଣ ପ୍ରାଣେ ଅଖଣ୍ଡ ପୂର୍ଣ୍ଣତା ।

ମୁକ୍ତ ବିହଙ୍ଗମୀ ସମ ଅନନ୍ତ ବିଳାସେ
ଉଡ଼ିଯାଏ କ୍ଷଣକେ ମୁଁ ତୁମ ଅଭିଳାଷେ ।

ସପନ-କୁହୁକ-ରଥେ ଦେଖେଁ ମୁହିଁ ବସି
ସପ୍ତ ଜନମର କାମ୍ୟ ତୁମ ମୁଖ-ଶଶୀ ।

ତେଇଁ ପଡ଼େ ତୁମ କୋଳେ ପ୍ରେମ ଉତ୍ତରଳେ
ସଫଳ ଜନମ ମମ ହୁଅଇ ବିହ୍ୱଳେ ।

□ □

## ଜିଜ୍ଞାସା

କହ ବନ୍ଧୁ ! କହ ମତେ
                କିବା ଅର୍ଥ ଏଇ ବନ୍ଧନର
ଅଜଣା ଅଚିହ୍ନା ହୋଇ
                ଥିଲା ଦିନେ ତୁମ ଆମ ଘର ।

ତୁମ ଗାଆଁ ମହୁମାଛି
ଆମ ଛୋଟ ବାରିଫୁଲ ସାଥେ
କରି ତ ନ ଥିଲା ପ୍ରୀତି
ଦିନେ ହେଲେ କେବେ ଅକସ୍ମାତେ ।

ତୁମ ତୋଟା ପିକବଧୂ
ଆମ ଗାଆଁ ସହକାର ମାଳେ
ଦିନେ ତ ନ ଥିଲା ଡାକି
'କୁହୁ' ତାର ଚଇତି ସକାଳେ ।

ତୁମ ନଭ ସୌଦାମିନୀ
ଆମ ଗାଆଁ ଆଷାଢ଼ରେ ଡାକି
ନ ଥିଲା ତ ଚମକାଇ
ଦିନେ ହେଲେ ସ୍ତିମିତ ଏ ଆଖି ।

ତୁମ ନଈ ଢେଉ କେବେ
ଆମ ଗାଆଁ ମୃଦୁ ସୁଅମେଳେ
ସୃଜି ତ ନ ଥିଲା ଗାନ
ଭୋହୁଅର ଫୁଲସଞ୍ଜବେଳେ ।

ତୁମ ଗାଆଁ ହୈମନ୍ତିକା
ଆମ ଗାଆଁ ଦୂର୍ବା-ବଧୂ-ଗାଲେ
ଚିତ୍ରିତ ନ ଥିଲା କମ୍ର
'ପତ୍ରାବଳୀ' ହିମ ବିନ୍ଦୁମାଳେ ।

ପ୍ରଜାପତି ସମ ଯେବେ
ଦିନେ ମୁହିଁ ସ୍ୱପ୍ନ-ଉପବନେ
ବୁଲୁଥିଲି ଭାବଭୋଳେ
କୁଆରିଆ ମହୁଆ ଯୌବନେ–

କି ଅମୃତ ଶୁଭ ଲଗ୍ନେ
ସମ୍ମୁଖେ ମୋ କନ୍ଦର୍ପର ବେଶେ

ଉଭା ହେଲ ଅନ୍ତର୍ଯାମୀ !
ରହିଲି ମୁଁ ଚାହିଁ ନିର୍ନିମେଷେ ।

ସେ ଦିନ ବସନ୍ତ-ବାସେ
ମାଙ୍ଗଳିକ ଗାଇଲା କୋକିଳା
ଚମକି ଚାହିଁଲା ନଦୀ
ବଣ ତୋଟା ଝର ଗିରିଶିଳା ।

କସ୍ତୁରୀ-ପରାଣ ମମ
ଛନ ଛନ ହେଲା ତୁମ ପାଇଁ
କହିଲି ମୁଁ "ତୁମ ବିନା
ଏ ଜୀବନ ଅର୍ଥ କିଛି ନାଇଁ ।"

ଜାଣେ ବନ୍ଧୁ ! ସଫଳତା
ନାହିଁ କେବେ ମର ବନ୍ଧନର
ଅମର ନୋହିଲା ଯେବେ
ମୋ ଅନ୍ତରେ ତୁମରି ଅନ୍ତର ।

ଦେହର ମମତା ଖାଲି
ପ୍ରଣୟର ଅର୍ଥ ଯଦି ହୁଏ
ରୁହ ତୁମେ ବହୁ ଦୂରେ
ଅତୀତେ ମୁଁ ଭସାଇବି ଲୁହେ ।

ଆପଣାର ଉପଭୋଗ
ତୁମେ ଯେବେ କର ଅଭିଳାଷ
ବିସୋରି ମୁଁ ଯଉବନ
ଛିଣ୍ଡାଇବି ଏଇ ମାୟା-ପାଶ ।

ଜନ୍ମର ଶାଶ୍ୱତ ତଥ୍ୟ
ନାହିଁ ଯେବେ ବୁଝିପାର ତୁମେ
କିବା ଥିଲା ପ୍ରୟୋଜନ
ଆସିବାର ଏ ସୁନ୍ଦର ଭୂମେ ?

ମମତାର ପଦ୍ମ ଯେବେ
ସ୍ୱପ୍ନ-ସରେ ଫୁଟି ଖାଲି ଝରେ
ସତ୍ୟ ଏ ହୃଦୟ-ସଦ୍ମେ
ଚିରନ୍ତନ ସୌରଭ ନ ଭରେ

ବ୍ୟର୍ଥ ଏ ଜନମ ତେବେ
ବ୍ୟର୍ଥ ଆମ ମଙ୍ଗଳ ସୃଜନ
ବୃଥା ଏ କ୍ଷଣିକ ଯୋଗ
ଅର୍ଥହୀନ ଏ ମଧୁ ବନ୍ଧନ ।

□ □

## ଝରାଶିଉଳି

### (ଏକ)

— ପ୍ରିୟ —

ଦିନେ
ନିର୍ମଳ ସଜଫୁଲ
ଥିଲ ତୁମେ ସହି ଗୋ
ଏକ
ନିଭୃତ ଉପବନେ
ସଜ ମଧୁ ବହି ଗୋ ।

— ପ୍ରିୟା —

ଆହା,
ମଦନ ସମାନ ଥିଲ
ମୋ ନୟନେ ବନ୍ଧୁ
ତୁମେ
ଯେ ଦିନ ଅବତରିଲ
ମଳୟର ସ୍କନ୍ଧୁ ।

— ପ୍ରିୟ —

ଏଇ
ତୁଷାରିତ ଜୀବନର
ଚିର ଶୀତ ଭୂମେ ଗୋ
ଦିନେ
କଅଁଳିଆ ଖରା ପରି
ଲାଗୁଥିଲ ତୁମେ ଗୋ ।

— ପ୍ରିୟା —

ନବ
ଯଉବନ-ଗ୍ରନ୍ଥର
ମଧୁ ମୁଖବନ୍ଧେ

ପ୍ରିୟ,
ତୁମକୁ ମୁଁ ଦେଖିଥିଲି
ସୁଲଳିତ ଛନ୍ଦେ ।

— ପ୍ରିୟ —

ଦିନେ
କାଉଳିଆ ସକାଳର
ସାଉଁଳିଆ ଶୟନେ
ତୁମେ
ଚନ୍ଦ୍ରାର ଅଞ୍ଜନ
ରଞ୍ଜିଲ ନୟନେ ।

— ପ୍ରିୟା —

ଆହା,
ଅଙ୍ଗେ ଦେଲ ଯେ ତୁମେ
ଅମୃତ ପରଶ
କ୍ଷଣେ
ଲକ୍ଷ ସାହାରା ହେଲା,
ଉର୍ମିଳ ସରସ ।

— ପ୍ରିୟ —

ସଖି,
ତୁମରେ ମୁଁ ଭେଟିଥିଲି
ସୃଷ୍ଟିର ସପନେ
ଯେବେ
ସୋହାଗର ଶୋହା-ଶିରୀ
ଥିଲା ତୁମ ଲପନେ ।

— ପ୍ରିୟା —

ଦିନେ
ତୁମ ହୃଦ-ସ୍ପନ୍ଦନ
କି ମୋହନ ମନ୍ତ୍ରେ
ସଖା,
ବାଜୁଥିଲା ରହି ରହି
ଏଇ ହୃଦ-ତନ୍ତ୍ରେ ।

— ପ୍ରିୟ —

କହ
କିମ୍ବା ସେଇ ବଲ୍ଲକୀ
ଉଠୁ ନାହିଁ ବାଜି ଗୋ
ସଖି,
ତୋଳି ସେଇ ମୂର୍ଚ୍ଛନା
ଏ ଜୀବନେ ଆଜି ଗୋ !

— ପ୍ରିୟା —

ଚିର
ଧରାମୁଖେ ଚାହିଁ କି ଗୋ
ବସେ ଚୋରା ଚଇତ
ଚିର
ପ୍ରିୟାମୁଖେ ପୀରତି କି
ଡାକି ରହେ ଦୟିତ ?

– ପ୍ରିୟ –

ସଖି,
ଦରଫୁଟା ସରୁ ସ୍ମିତ
ଆଡ଼ ଭ୍ରୂଭଙ୍ଗୀ
ନବ
ଭାସ୍ୱର ଯଉବନେ
ନଶ୍ୱର ସଙ୍ଗୀ ।

– ପ୍ରିୟା –

ସଖା,
ଅମୃତ ପ୍ରେମ ତବ
ଅମୃତମୟ ହେ
ଯେବେ
ଯୌବନ ମାନିଲା ତା
ପାଦେ ପରାଜୟ ହେ ।

– ପ୍ରିୟ –

ମରେ
ସୌଷ୍ଠବ ବିଲୟେ କି
ପ୍ରଣୟର ତୃପ୍ତି ।

– ପ୍ରିୟା –

ତେବେ
ସମାଧାନେ ସମାଧି ଗୋ ।
ଘେନ୍ନ ସବୁ ଯୁକ୍ତି ।

□ □

(ଦୁଇ)

ଜୋଛନା-ପାଗଳ ଆକାଶ ତଳେ
ଘରଛଡ଼ା ଡାକ ଅନ୍ତରୁ ଶୁଣି
ଅବଶ ଅଙ୍ଗ ପାଦେ ନ ଚଳେ
ଜୋଛନା-ପାଗଳ ଆକାଶ ତଳେ ।

ଶୁଣିଲା ବେଳୁ ସେ କୁହୁ ମନ୍ତରେ
ହାତୁ ଖସେ ସବୁ ପାଇଟି ପତର
ଅକାରଣେ କିଆଁ ପଡ଼େ ଉଠେ ହିଆ
ଧାରା ଶିରାବଣ ନୟନୁ ଗଳେ
ଜୋଛନା-ପାଗଳ ଆକାଶ ତଳେ ।

କି ଦରଦ ସାରା ହୃଦୟ ଭିତରେ
କି ଅକୁହା ବ୍ୟଥା ଘାରେ ଚିତ୍ତରେ
ବୃଥା ଏ ପବନ ପିକ କୁହୁତାନ
ପ୍ରାଣେ ଯେବେ ଖର ନିଦାଘ ଜ୍ୱଳେ
ଜୋଛନା-ପାଗଳ ଆକାଶ ତଳେ ।

କଇଁଫୁଲିଆ ଏ ଚାନ୍ଦର ହସ
ଶୋଷିନିଏ ପ୍ରାଣୁ ପ୍ରୀତିସୁଧା-ରସ
ବାଜି କାହା ବାଣ ମାନସ-ହରିଣୀ
ଉଚ୍ଚାଟେ ଧାଏଁ ଉତ୍ତରଳେ
ଜୋଛନା-ପାଗଳ ଆକାଶ ତଳେ ।



## (ତିନି)

ସଖି !

ବିଶ୍ୱ ପରାଣ ପ୍ରୀତି
ଧନ୍ୟ ତା ଯାଦୁ ରୀତି
ଶୈଳୁଁ ଝରାଇ ଗୀତି ସାଗରେ ବାହେ
ପଙ୍କଜ ରବି କରେ
ଚାତକଟି ନୀରଧରେ
କୁମୁଦିନୀ କଳାକରେ ଯା ଲାଗି ଚାହେଁ ।

ମଧୁର ତା ଅନୁରାଗେ
କୈଶୋର ନିଦ ଭାଗେ
ନିଦାଘେ ବରଷା ଜାଗେ    ଯହିଁ ସେ ହସେ
ବିଷମ ତାହାର ଖେଳ
ଦ୍ବନ୍ଦ କଲେ ଉଦବେଳ
ଯୌବନ ରଚେ ଖେଳ    ସରଗ ଖସେ ।
ଯୁବାରେ ଯୁବତୀ ପାଶେ
ମଳୟେ କୁସୁମ ବାସେ
ସାଗରେ ପୂନିଅଁ ହାସେ    ବିବଶ କରେ
ଶାଶ୍ବତ ସ୍ରଷ୍ଟାର
ସୃଷ୍ଟି ଲାଗଇ ଭାର
(ଯହିଁ) ପ୍ରୀତି ନିର୍ଝର ଧାର    ନାହିଁ ଗୋ ଝରେ ।



## (ଚାରି)

ଯୌବନ-ବନ ଚୋରା ଗନ୍ଧ
ପ୍ରଣୟର ଛନ୍ଦ
ମଳୟର ମହୁଲ ଆନନ୍ଦ
ପଞ୍ଚମ ଗୀତି ଗୋ

କୁଆରିଆ-ବୟସର ପାନ୍ଥ
ଅଧୀର-ଅଶାନ୍ତ
ବୁଝୁ ନାହିଁ ବନ୍ଧୁ ହେ ଭ୍ରାନ୍ତ
ନଶ୍ବର ପ୍ରୀତି ଗୋ ।

ସମ୍ଭୋଗେ ଉଲ୍ଲାସ ସ୍ୱଚ୍ଛ
କୁସୁମିତ ତଚ୍ଛ
ଚାନ୍ଦିନୀ ବିଭାବରୀ ଗଚ୍ଛ
ସପନେ ଗୋ ବଞ୍ଚେ ।

ବିଚ୍ଛେଦ-ବେଦନାର ଚିହ୍ନ
ତନୁ କରି ଭିନ୍ନ
ପ୍ରୀତିର ଯେ ମିଳନ ଅଚ୍ଛିନ୍ନ
ସୃଜେ, ସରଗ ଏ ମଞ୍ଚେ ।



## (ପାଞ୍ଚ)

ଏଇ ଜୋଛନାଭୋଳା
ଚାରୁ ଚଇତି ରାତେ
ମନ ସପନେ ଦୋଳି
ନାଚେ ସରାଗ ବାତେ ।

ସୁଖେ ବନ୍ଧୁ ମୋର
ନିଶି କର ଗୋ ଭୋର
ପେଷେ ମଳୟ ଚୋର
ଡାକ, କୋକିଳ ହାତେ ।

ମୁଖେ ଗଳପ ରଖି
ବେଗେ ତଳପ ତେଜ
ଠାରେ ନିର୍ଜନ ବିଲ
ପାରି ଶାଗୁଆ ଶେଯ ।

ଗୃହ ବନ୍ଧନରେ
ନବ ନନ୍ଦନରେ
ଫୁଲ ଚନ୍ଦନରେ
ଆଉ କିମାଇଁ ହେଜ ?

ଭୁଲି ଦୁନିଆ ଦାଉ
ଭାସିଯିବା ଗୋ ଦୂରେ
ଯହିଁ ଡାକଇ ବେଣୁ
ପ୍ରାଣମତାଣି ସୁରେ ।

ଯହିଁ କୋକିଳ ଭାଟ
ଫୁଲ ଭଅଁର ନାଟ
ଯହିଁ ସୁରଭି ହାଟ
ବସେ ଗୋପନ ପୁରେ ।

ଠେଲି ପଶ୍ଚାତରେ
ପାଦ ଚାଲ ହେ ଧାଇଁ
ଉଷା ଦେଖାଏ ପଥ
ଆମ ଯାତ୍ରା ପାଇଁ

ଚାଲ ସୃଷ୍ଟି ପରେ
ଢାଳି ଦୃଷ୍ଟି ଥରେ
ଭରା ଉଲ୍ଲାସରେ
ନୂଆ ରାଗିଣୀ ଗାଇ ।

□ □

## (ଛଅ)

ଗଙ୍ଗା ଯଉବନ ନାଚିଲା ଯେ ଦିନ
ଗହଳ ଓସ୍ତ ଡାଳେ,
ଦେଖିଲି କାହାର ମାଣିକ ହସ ମୁଁ
ରୂପର ଉର୍ମିମାଳେ ।

ବିଜୁଳି ପରାଯେ ଖେଳିଲା ମନେ ସେ
ନ ଫୁଟି ଫୁଟିଲା ବାଣୀ,
ନ ହସି ହସିଲା ନ ରସି ରସିଲା
ନ ଚାହିଁ-ଚାହିଁଲା ଠାଣି ।

ବିଶ୍ୱ ରୂପସୀ– ଗଣ୍ଡେ ନିରେଖି
କୋଟି କାର୍ତ୍ତିକ-ଉଷା,

ଶୟନେ ସପନେ ଝୁରିହେଲି କାର
ଆଡ଼ଲାଜ ଆଡ଼ରୁଷା ।
ଯୌବନ-ନଦୀ ସେପାରି ମୁହାଣେ
ଓଷ୍ଠ ହୋଇଚି ମୂକ,
ମାଣିକ ହସର ଲହରେ ସତେ କି
ଝଟକେ କୁହୁଡ଼ି-ମୁଖ ।
ଦିନେ ଯେ ଶୋଭାର ଲୋଭନ ଚୟନେ
ପ୍ରାଣ ହୋଇଥିଲା ବାଇ,
ଆଜି ବୁଝିଲି ସେ ପ୍ରେମ-ଆକାଶର
ମଲା ରାମଧନୁ ଛାଇ ।



## (ସାତ)

ଆଜି —
ଅନ୍ତରେ ଜାଗେ ପ୍ରେମ-ମନ୍ଦିର
ଖୋଲିବାର ବାସନା,
ଶଙ୍କା ଓ ସଂଶୟ ପଛେ ପଛେ
ଏତେ ଆଉ ଆସ ନା ।
ନିଭୃତେ ଯେଉଁ ପଥୁ ଶୁଭେ ମଧୁ
ନିଶବଦ ଆରତି,
ବାହିନେଏ ନିର୍ଭୟେ ତହିଁ ମତେ
ଆରେ ମନ-ସାରଥି !
କାମ୍ୟ ମୋହର ଏଇ ସମ୍ମୁଖ
ଦେବାଳୟ ଦୁଆର,
ପ୍ରାଣ-ଯମୁନାର ତୀରେ ଉଠେ ଏ'କି
ସ୍ୱପ୍ନିଳ ଜୁଆର ।

କୋଟି ଦମ୍ପତି ଚିର-ଆଶ୍ଳେଷ
ବନ୍ଧନେ ଛନ୍ଦା,
ମୂର୍ତ୍ତି ଧରିଚି ମୁଖମଣ୍ଡଳେ
ତହିଁ ତିନି ସନ୍ଧ୍ୟା ।
ଶକ୍ତି ମୋ ପରାହତ ରୁଦ୍ଧ ଏ
ପହଡ଼ର ମୋଚନେ
ଭ୍ରାନ୍ତିର ପ୍ରହେଳିକା କୁହୁଳଇ
ଖାଲି ମୋର ଲୋଚନେ ।

□□

## (ଆଠ)

ପିକ କଣ୍ଠକୁ କ୍ଳାନ୍ତ କରି ଗୋ
ମଳୟ ଯେ ଦିନ ମରିଗଲା,
ଚଇତର ହୋରି ସରିଗଲା,
ପୁଣି
ଚମ୍ପା କେତକୀ ଝରିଗଲା,
ସେ ଦିନ ବନ୍ଧୁ ପାଶେ ମମ ଆସି
ଜଡ଼ିତ ବଚନେ ଦରଦ ପ୍ରକାଶି
ଦେଖାଇଲ ଚିରି ହୃଦୟ ତୁମର
ମୋ ପାଇଁ ବରିଚ ଯେତେ ବ୍ୟଥା,
ଆଉ କିଆଁ ଲାଜ ଓଷ୍ଠ ଚାପଇ
ମୁକୁଳାଇବାକୁ ମନ କଥା ?
କାହାପାଶେ ପ୍ରିୟ ସଂକୋଚ ଆଜି
କା'ପାଶେ କହ ତ ସଂକୋଚ;
ମିଳନର ଏଇ ମଧୁର ଲଗନେ
ଲୁହ ପୋଛ ବେଗେ ଲୁହ ପୋଛ ।

ତୁମେ ହେଲେ ଭାବ    ମୁଁ ହୋଇବି ବାଣୀ
ତୁମେ ହେଲେ ରାଜା    ହେବି ମୁହିଁ ରାଣୀ,
ମତେ ପାଇ ଯେବେ    ହତାଶା ତୁମର
ସୁଖ ମୁଁ ଦେଖିବି କହ କାହିଁ,
ନୂଆ ପ୍ରଶ୍ନର    ପ୍ରଥମ ଜବାବ
ପାସୋରି ଦେଲ କି ଦୂରେ ଥାଇ ?

"ଅଭାଗା ସ୍ୱାମୀର    ନିଃସ୍ୱତା ଦେଖି
ନ ଡାଳିବ ସଖି ଅଭିମାନ,
ତୁମ ପ୍ରୀତି-ତାର    ବେଦନା-ବୀଣାରେ
ତୋଳିଛି ଏବେଟି ନୂଆ ତାନ ।
ମରଣ ଏ ପଟେ    ତୁମ ମଧୁହାସ
ଶମୁଥିବ ମୋର    ପରାଣ-ପରାସ
ମନ ବ୍ୟଥା ଥରେ    ଖୋଲି କୁହ ସହି !
କପଟ ବିହୀନ ଅନ୍ତରେ,
ତୁମରି ପାଇଁ ଗୋ    ଏ ପରାଣ-ପୁରେ
କୋଟି ଜନମର ସ୍ନେହ ଝରେ ।"

"କଳି ହୁଏ ନାହିଁ    ପ୍ରୀତିର ମୂଲ୍ୟ
ନବ-ଯୌବନ-ବିପଣୀରେ,
ସ୍ୱାର୍ଥର ମୋହ    ରଣଭାର ସମ
ମାଡ଼ି ନାହିଁ ବସୁ ମୋର ଶିରେ ।
ପ୍ରାଣେ ମିଶି ପ୍ରାଣ    ମନ ସାଥେ ମନ
ଧନ୍ୟ କରୁ ଏ    କୁଟୀର ଜୀବନ
ଶାନ୍ତିରେ ତୁମେ    ଥିବ ଯେବେ ସଖା
ସ୍ୱର୍ଗ ଅଛି ମୋ ଚଉପାଶେ,
ସୃଷ୍ଟିର ଯେତେ    ଦୁର୍ଲ୍ଲଭ ସୁଖ
ଭୋଗୁଥିବି ତୁମ ମୃଦୁହାସେ ।"

□ □

## (ନଅ)

ନବ ଯୌବନ ବଂଶୀ ଫୁକାରେ
ଉଠିଲା ଯେବେ ରେ ଫୁଲି
ଜୀବନ ଯମୁନା ସୁଅ
ଜୋଛନାପଖଳା ସୌମ୍ୟ ମୁଖ କା'
ସପନେ ଡାକିଲା ଆସି
''କଥା କୁହ, କଥା କୁହ ।''

ଚକିତେ ଚାହିଁଲି ବାତାୟନ ପେଇ
ରାତି ଯେ ଅଳପ ବାକୀ—
କେହି ତ କୁଆଡ଼େ ନାହିଁ
ବିଦୂଷକ ସମ ଦୁଷ୍ଟ ମଳୟ
ଗଲା ଖଙ୍କାର ମାରି
ମୋ ପଟେ ଆସଇ ଧାଇଁ ।

x x x

ସପନ-ସାଗର ରୂପଢେଉ କାଟି
ଅତୁଳ ପ୍ରଣୟ ରାଗେ
ଭେଟିଥିଲା ଦିନେ ଯିଏ,
ସେଇ ଉର୍ବଶୀ ଆଜି ମୋ ମାନସୀ
ମର୍ତ୍ତ୍ୟ-କୁଟୀର ବୁକେ
ଅମୃତ ସୁଖ ଦିଏ ।



## (ଦଶ)

ବସନ୍ତର ପଡ଼ିଚି ଡାକ ପଠାର ବେଣାବଣେ,
ବଂଶୀସ୍ୱରେ ଖୋଜେ କେ ମତେ ଆପଣା ପରି ଜଣେ ।
ଜୀବନ-ନଭେ ଜାଗିଚି ନବ- ଉଷାର ଉଦୟନ;
ନହୁଲି ଦେହେ ଚହଲି ଉଠେ ପହିଲି ଯଉବନ ।
ସମ୍ମୁଖେ ମୋ ପଡ଼ିଚି ଯେଉଁ ଅନ୍ତହୀନ ପଥ,
ଆବେଗେ ତହିଁ ଡାକଇ ହସି ମୋ ସ୍ୱପ୍ନ ଭବିଷ୍ୟତ ।
କଅଁଳ ବନ କଅଁଳ ମନ ଚଳାୟମାନ ବାଳା,
ପଣତ ଉଡ଼େ ନିରୋଳା ପଥେ ହାତରେ ବନମାଳା ।
ତରୁଣ ବୁକୁ ଶିହରି ଉଠେ ହେରି ତା ଗତିଠାଣି,
ଭାଗ୍ୟବାନ ସେହି ସେ ଏକା ଧରିବ ଯେ ତା' ପାଣି ।
ଆଖିର ଭାଷା ବୁଝିଲା ଆଖି ମନର କଥା ମନ,
ତରୁଣୀ ଲାଜେ ପଡ଼ିଲା ନଇଁ ସଫଳ ଯଉବନ ।
ଅକ୍ଷମ ତା ବର୍ଣ୍ଣିବାରେ ଦରଦୀ ଶତ କବି
ଶିଳ୍ପୀ ହାରେ ଆଙ୍କିବାରେ ଦୁର୍ଲଭ ସେ ଛବି ।



## (ଏଗାର)

ଅଧ ରାତି ଅଧ ରାତି
କଅଁଳ ମଳୟ ଗହମ ନିଦୁଁ ଉଠିଲା ମାତି
ସେ ପାରି ବନେ କାତର ମନେ
କରତି ହୁଅଇ ମାଧବୀଲତା ନରମ ଛାତି ।

ପତର ମେଳେ ଏତିକିବେଳେ
ଆସ୍ତେ ଜୋଛନା କୋଇଲି କାନେ କହିଲା କିବା,
ପାହାଡ଼ ନଈ କାକରେ ଶୋଇ
ସପନେ ଦେଖିଲେ ମାଧବୀ ସାଥେ ବଉଳ ବିଭା ।

ପବନ ବହେ ବଉଳ କହେ
"ତେରେଛି ମୋ ମୁହେଁ ଅଳପ ଟିକେ ଚାହିଁଲୋ ଲତା,
ନୟନେ ତୋର ଶିଶିର ଭୋର
ବକ୍ଷେ ଚହଲେ ଫାଲ୍‌ଗୁନର ବିହ୍ୱଳତା ।

ଏ ବନଧାମେ ଆଜି ଲୋ ଆମେ
ଯା' ମଧୁ ସୋହାଗ-ନିବିଡ଼ ଡୋରେ ବନ୍ଧା ଅଛେ,
ପ୍ରଣୟ ଭରି ଆମରି ପରି
ଅରୂପ ସେ କର ଏସନ କୋଟି ସୃଷ୍ଟି ରଚେ ।"

□□

## (ବାର)

ବର୍ଷା ରଚିଛି ଦୂରେ ଅଭିସାର
ଅମ୍ବରେ ଛାଟି ସୁନା ଶୀଷା ଗାର
ପ୍ରବାସ-ଗମନ-ଉନ୍ମୁଖ ପ୍ରିୟ
କଣ୍ଠ ଲେଖିଲା ପ୍ରାୟ—

ଛଳଛଳ ଆଜି ପ୍ରକୃତି ଆଖି
କୁଟୀରବାସିନୀ ବଧୂ ନିରିମାଖି
ଅଶିବ-ଅଶ୍ରୁ ପଣତେ ଲୁଚାଇ
ପଛକୁ ଚାହେଁ କି ହାୟ !

ରୂପ-ଚୁମ୍ବକ ଟାଣେ ନାଇଁ ମନ,
ଭେଦେ ନାହିଁ ହୃଦେ ଦେହ-ଯଉବନ
ମରଣ-ସାଗରୁ ଅମରଣ ହାସ
ଉଠେ ଆଜି ଉଦ୍‌ଭାସି–

ମନ ପ୍ରାଣ ଯେଣୁ ଲୀନ ଏକାଧାରେ
ଏଡ଼ି ଦୁନିଆର ଲକ୍ଷ ବାଧାରେ
ବାରିଧିରେ ଯଥା ସତ୍ତା ହଜାଏ
ସୃଷ୍ଟିର ବାରିରାଶି ।



(ତେର)

ବିଲୁଁ ଡାକ ଦେଲେ ଗେଣ୍ଡାଳିଆଏ
"ହେଲା ପାହାନ୍ତି ରାତି"
ନିଦମଡ଼ା ଶୀତ ଉତ୍ତରୁ ଆସେ ବୋହି
ଦେଢ଼େଇ ହସଇ ପ୍ରତିପ ଚାନ୍ଦ
ରୂପାର ଚାଦର ପାତି
ମଥାନେ ଶୋଇଛି କାକର ବୋଳିତା ପୋଇ ।

ସହସା ତନ୍ଦ୍ରା- ଉନ୍ମୀଳ ଆଖି
ଖୋଜିଲା କାର ମୁହଁ
ଶୂନ୍ୟ ଶେଯେ କା ପରଶ ଲୋଡ଼ିଲା ଦିହ
ଛୁଟି ତ ରହିଚି ଦୀର୍ଘ ସୁଦୂରେ
ନୟନେ କିପାଇଁ ଲୁହ
ନ ମିଳେ ନୀରବ ଯୁକ୍ତିର ସୂତା-ଖିଅ ।

ନିରୋଳା ଶୟନେ ପ୍ରିୟର ଅଭାବ
ବେଦନାର ତୀରଭେଦେ
ଦୟିତା-ମରମେ ପୌଷ ରଜନୀ ଶେଷେ,
ଦେହ ସିନା ରହେ ଶୃଙ୍ଖଳ ଜାଲେ
ନୟନ ଅନ୍ତରାଳେ
ମାନସ କିନ୍ତୁ ଛୁଟଇ ସୁଦୂର ଦେଶେ ।

ପରବାସୀ ପ୍ରିୟ ସପନ ମିଳନ
ତୃଷିତ ନେତ୍ରେ ବୋଳେ
କି ମଧୁସ୍ନିଗ୍ଧ ସୁଶୀତଳ ଅଞ୍ଜନ,
ଆଶ୍ୱାସ ଲଭେ ନିଃସ୍ୱ ହୃଦୟ
ଉଲ୍ଲାସେ ମନ ଦୋଳେ
ତୋଟାମାଳୁଁ ତେଣେ ଡାକଦିଏ ଖଞ୍ଜନ ।



## (ଚଉଦ)

ସେ ଅନେକ ଦିନର ପୁରୁଣା
ଦୂର ଶାଗୁଆ ଜୀବନ ସ୍ମୃରତି
ଯେଉଁ ବୟସର ମଧୁ ମଦିରା
ଭରେ ତରୁଣ ପରାଣେ ପୁରତି ।

କେତେ ଶ୍ୟାମ ବସନ୍ତ କାକଳି
କେତେ ଗୋରା ଶରତର ଜୋଛନା
କେତେ ଘନ ବରଷାର ବିଜୁଳି
ମନେ ଲେଖୁଥିଲେ ପ୍ରୀତି-ରଚନା ।

ଆହା ସେ ଦିନ ରିକ୍ତ ତଳପ
ମୋର ଶାନ୍ତ ନିଶୀଥ କକ୍ଷେ

କାର ପରିଚୟହୀନ ପରଶ
ସଦା ଲୋଡୁଥିଲା ଏଇ ବକ୍ଷେ ।

ଦିନେ ସପନେ ମୋହନ ମୂରତି
ଲଭି ସଙ୍ଗ ବିହୀନ ଭବନେ,
ଲାଜେ ଉଠିଥିଲି ମୁଁ ଯେ ପୁଲକି
ଚାହିଁ ମୁକୁଳା ଚଇତି ଗଗନେ ।

କୋଟି ସୁନା କଳପନା ମନର
ପ୍ରାଣେ ରଚୁଥିଲେ ଆଶା-ଗୀତିକା
ଆହା ଡାକୁ ନ ଥିଲେଟି ବନର
କେତେ କଳମୁଖରିତ ବୀଥିକା ।

ସେହି ପ୍ରଣୟ-ଦ୍ରାକ୍ଷା ଲତାଟି
ପ୍ରାଣେ ଅଧେ ମରି ଅଧେ ଜୀଇଚି,
ଏବେ ନାଇଁ ତା ଫଳର ସୁଆଦ
ଦିନେ ସପନାଧାରେ ଯା ପିଇଚି ।

□ □

# ପ୍ରିୟ-ବାଣୀ

— ୧ —

ସଖି !

ଆଖି ମିଟି ମିଟି ସଞ୍ଜବତିଟି
ଜାଳିଦିଅ ଯେବେ ପୂରେ
ଆଲୋକ ଦୀପିତ ମୋର ଏ ଚିତ୍ତ
ଅରୂପ ଜଗତେ ଘୂରେ ।

ପ୍ରୀତି-ଜ୍ୟୋତି ଚିର ତୈଳ ପୂରିତ
ବିଶ୍ୱ-ପ୍ରଦୀପେ ଝଳେ
ତୁମ ମୋଓ ପରି ଲକ୍ଷ ସଳିତା
କେହି ନିଭେ କେହି ଜଳେ ।

— ୨ —

ତୁମେ—
ମୋ' ମନ-ବନରେ ପହିଲି କୋଇଲି ଛନ୍ଦ
ନବ ମଧୁମାସ ଫୁଲର ମହୁଲ ଗନ୍ଧ ।
ନବ ଶିଶୁଟିର ଦରୋଟି ମଧୁର ବଚନ
ତରୁଣ କବିର ରସାଳ ଗୀତିକା-ରଚନ ।

ହେ ନବୀନା ! ଯେବେ
କଲ ମୋରେ ପ୍ରାଣୁଁ ପ୍ରିୟଗୋ
ନୟନେ ନବୀନ ପ୍ରୀତି-ଅଞ୍ଜନ
ନବ ରାଗେ ବୋଳିଦିଅ ଗୋ ।

— ୩ —

ବକ୍ଷେ ଦିଅ ଗୋ ବିପୁଳ ଶକତି
ଅସୀମ ତୃପତି ପୀରତି-ମଧୁ
ତୁମେ ନୁହଁ ଖାଲି ବାସର ନିଶିର
ଭୋଗବିଳାସର ତରୁଣୀ-ବଧୂ ।

— ୪ —

କନ୍ଥପୁରୀ-ରୂପ ମୁଁ ଦେଖି
ତୁମରେ ସଖି ନ ଥିଲି ବରି
ସ୍ୱଳ୍ପାୟୁଷ କ୍ଷଣିକ ହାସ
ଶିଉଳି ସମ ପଡ଼େ ଯା' ଝରି ।

ପ୍ରଣୟିନୀ ଗୋ ! ପ୍ରଣୟ ପାଇଁ
ପାଏଁ ମୁଁ ଭଲ ପରାଣ ସମ
ବିଶ୍ୱେ ଆଉ ଏତହୁଁ ବଳି
ଅଛି କି ସୁଖ ମଧୁରତମ ?

— ୫ —

ସଖି !
ପେଟକୁ ଅଘଟ ହେଉ ପଛେ ଶାଗ ପଖାଳ
ସୁଖେ ତୁମ ପାଶେ ଯାଉ ମୋର ପାହି
ନିଇତି ସଞ୍ଜ ସକାଳ ।

ଯେତେଦିନ ଆମେ ଜୀଇବା ଗୋ ରାଣି,
ଶୁଣାଇବ ତୁମେ ରସ-ସୁଧାବାଣୀ
ସରଗର ସୁଖ ଛିରୀରେ ଶୋଭିବ
ତା' ଯୋଗେ ଖତରା ଏ ଚାଳ
ତୁମ ଶୁଭାଗମେ ଫିଟିବ ମୁଦା ମୋ କପାଳ ।

— ୬ —

ସାଥି ଗୋ ସାଥି !
ହେଉ ଏ ଜୀବନ ଚିର-ବିନୋଦନ
ସ୍ୱପ୍ନ-ସଘନ ଜୋଛନା ରାତି ।
ରାଣି ଗୋ ରାଣି ।

ତୁମେ ମୋର ନୂଆ କ୍ଷଣ ମୁହଁ ତୁହାଁ
ପ୍ରୀତିରସ-ଜୁଆ ନରମ ବାଣୀ !
ପ୍ରିୟା ଗୋ ପ୍ରିୟା !

ଦୁର୍ଲଭ ତବ ହୃଦୟ-ବିଭବ
ପ୍ରଣୟ-ପରବ ଝୁରେ ଏ ହିୟା ।

— ୭ —

ଅନାବିଳ ପ୍ରଣୟର ସ୍ୱର୍ଗୀୟ ସ୍ପର୍ଶ
ଦୁଃଖେ ଗୋ ଏ ଜୀବନେ ସଂଚାରୁ ହର୍ଷ
ଦୈନ୍ୟ ଲୋତକ ଧୁଆ
ଛନ୍ଦ ମୁଁ ନୂଆ ନୂଆ
ଅର୍ପିଲେ ହେବ ସଖି, ତବ କର ପଦ୍ମେ
ଶ୍ରେଷ୍ଠ ମୋ ଗୌରବ ଏ ଧରଣୀ-ସଦ୍ମେ ।

— ୮ —

ସୁନ୍ଦରି ରୂପରମା ହେ ବାସକସଜ୍ଜା !
ମନ୍ଦିର ଏ ଯଉବନ ନୁହେଁ ଖାଲି ମହୁବନ
ମନସିଜ-ମନଲୋଭା ସରସିଜ-ଶଯ୍ୟା
ଡାକଦିଏ ଦୂରୁଁ ଯେଉଁ ଭୈରବ ଭେରୀ ଗୋ
ବେଳଥାଉଁ ଚଳ ବେଗେ ନାହିଁ ସହେ ଡେରି ଗୋ
ଲଘି ସୁଦୁର୍ମଦ ଝଞ୍ଜାର ଝନ୍ ଝନ୍
ବଜ୍ରର ବିଦ୍ରୂପ ବନ୍ୟାର ଗର୍ଜନ
ଶୈଳର ତାଣ୍ଡବ ସିନ୍ଧୁର ତର୍ଜନ
ବନ୍ଧୁର ପଥେ ଚାଲ ନ ରଖି ଗୋ ଲଜ୍ଜା
ହେ ବାସକସଜ୍ଜା !

— ୯ —

ହୃଦ-ବିରହ ସାଗରେ ବିଳସୁ
ସଖି ! ମିଳନର ସୁନା ସୂର୍ଯ୍ୟ
ଏଇ ସୁଖର ଧରଣୀ ଶୁଣୁ ଗୋ
ଆମ ପ୍ରଣୟର ଶୁଭ ତୂର୍ଯ୍ୟ ।
ସଖି ! ତୀକ୍ଷ୍ଣ ରୌଦ୍ର ବିନା କି
ଝରେ ସ୍ନିଗ୍ଧ ଶୀତଳ ବୃଷ୍ଟି
ତେଣୁ ସାର୍ଥକ ହେଉ ଜୀବନେ
ଦୁଃଖେ ଆମରି ଯୁଗଳ ସୃଷ୍ଟି ।

— ୧୦ —

ଚିର ବନ୍ଦନ
ତୁମ ବନ୍ଧନ
ଫୁଲ ଚନ୍ଦନ ସମ ସଜନି !
ମଣେଁ ମୋର ଏ ତପତ ବକ୍ଷେ

ନିତି ଗୌରବେ
ପ୍ରୀତି ସୌରଭେ
ଗୀତି-ବୈଭବେ ଦିବା ରଜନୀ
ତେଣୁ ବିକଶେଁ ତୁମରି ସଖ୍ୟେ ।

— ୧୧ —

ନିଖିଳ ଭୁବନେ ନ ଦେଖିଁ ମୁଁ ସଖି,
ତୁମପରି କାରେ ଜଣେ
ମୋ’ ଭିତରେ ଯେଣୁ ତୁମରି ହୃଦୟ
ଅନୁଭବେଁ ପ୍ରତିକ୍ଷଣେ ।
ନିଖିଳ ଭୁବନେ ନ ଦେଖେଁ ପ୍ରେୟସି,
ତୁମ ପରି କେହି ଜଣେ
ହସି ହସି ଛାତି ଦେବ ଯେହୁ ପାତି
ମୋ’ ଲାଗି ଜୀବନ-ରଣେ ।
ନିଖିଳ ଭୁବନେ ନ ଦେଖେଁ ପ୍ରେୟସି,
ତୁମ ପରି କେହି ଜଣେ
ଦୁଃଖ ମୋ’ ଦେଖି ଦରଦରେ ଲୁହ
ଭରିବ ଯେ ଆଖିକଣେ ।
ନିଖିଳ ଭୁବନେ ନ ଦେଖେଁ ମୁଁ ରାଣି,
ତୁମ ପରି କେହି ଜଣେ
ଗୌରବେ ମୋର ଉଠଇ ଫୁଲି ଯେ
ଈର୍ଷୁକ ଭବ-ବଣେ ।

— ୧୨ —

ସଖି !

ମେଘ ଝର ଝର ନିଦୁଆ ନିଶାର
ତୁମେ ଗୋ ଅଳସ ଶୟନ
ହିମ ଥର ଥର ଶୀତ ସକାଳର
ସପନ-ପୂରିତ ନୟନ ।

ତୁମେ

ସ୍ୱେଦ ଜର ଜର ଦହକ ଛାତିର
ସୁଲୁକା ପବନ ପରଶ
ମନ ତର ତର ନୂତନ ସାଥୀର
ପୀରତି-ମଧୁର ହରଷ ।

— ୧୩ —

ସଖି !

ବିଶ୍ୱ ପରାଣ ପ୍ରୀତି
ଧନ୍ୟ ତା' ଯାଦୁ ରୀତି
ଶୈଳୁଁ ଝରାଇ ଗୀତି ସାଗରେ ବାହେ
ପଙ୍କଜ ରବି-କରେ
ଚାତକଟି ନୀର ଧରେ
କୁମୁଦିନୀ କଳାକରେ ଯା' ଲାଗି ଚାହେଁ ।
ମଧୁର ତା' ଅନୁରାଗେ
କୈଶୋର ନିଦ ଭାଗେ
ନିଦାଘେ ବରଷା ଜାଗେ ଯହିଁ ସେ ହସେ
ବିଷମ ତାହାର ଖେଳ
ହୃଦ କରେ ଉଦ୍‌ବେଳ
ଯୌବନ ରଚେ ଖେଳ ସରଗ ଖସେ ।

ଯୁବାରେ ଯୁବତୀ ପାଶେ
ମଳୟେ କୁସୁମ ବାସେ
ସାଗରେ ପୂନିଅଁ ହାସେ     ବିବଶ କରେ ।
ଶାଶ୍ୱତ ସ୍ରଷ୍ଟାର
ସୃଷ୍ଟି ଲାଗଇ ଭାର
(ଯହିଁ) ପ୍ରୀତି-ନିର୍ଝରଧାର   ନାହିଁ ଗୋ ଝରେ ।

— ୧୪ —

ଯେବେ —

ପ୍ରୀତି-ସୁଧା ପରଷିଲ ମୋ' ଜୀବନ-ପ୍ରିୟ ଗୋ
ଶୀତ ବନେ ପଶିଲା କି ବସନ୍ତ ଝିଅ ଗୋ !
ଚଇତାଳି ଶ୍ୱାସ ଢାଳି ରୂପ-ଯାଦୁ କାଠିରେ
ହସାଇଲ ରସାଇଲ ମୋ' ମାନସ-କୁଟୀରେ
ରଙ୍ଗିନି,
ସୁନ୍ଦରି ସୁହାସିନି,
ମନ-କୂପେ କୋଟି ରୂପେ ଛବି ତବ ଫୁଟେ ଗୋ
ଦର୍ଶନେ ସ୍ପର୍ଶନେ କ୍ଳାନ୍ତି ମୋ' ତୁଟେ ଗୋ ।

— ୧୫ —

ନ ଥିଲେ ପ୍ରୀତି,     ଚଇତି ରାତି
ତରୁଣ ପ୍ରିୟ,     ତରୁଣ ସାଥୀ
ଯଉବନର ଫୁଟେ କି     ଗୀତି ହାସ୍ୟ ମନୋରମ
ପରାଣେ ତା'ର     ପରଶ ବିନା
ଆଶାର ବନ     ପାଉଁଶ ସିନା
ବ୍ୟାକୁଳ ହାୟ     ସଲିଳହୀନା ନିଦାଘ ନଦୀ ସମ ।

— ୧୬ —

ସଖି !

ଯେତେ ରୋଷ ରୁଷା     ଅଭିମାନ ଲୁହ

ଦଣ୍ଡକେ ତୁଟେ ହେଲେ ଦୁଇ ମୁହଁ
ଆଖିରେ ଆଖିର ମେଳ
କି ଛଟକେ ଆସି କି ମହାଶକତି
ମିଳାଏ ମାନସ ବିପରୀତ ଗତି
ହୃଦ କରି ଉଦବେଳ ।

— ୧୭ —

ଫୁଟାଇଛ କୋଟି କୁସୁମ ମୋ' ପାଇଁ
ଯେ ପଥେ ନେଇଛ ଟାଣି
ମତେ ସୁଖ ଦେଇ ସକଳ ଦୁଃଖ
ମରମେ ଭୋଗିଛି ରାଣି ।
ଚିନ୍ତା ବେଦନ ସନ୍ତାପ ଶୋକେ
ମଣି ବିଧି-ଅନୁରାଗ
ମଣ୍ଡି ଦେଇଛ ମସ୍ତକେ ମମ
ବିଜେତାର ସୁନା ପାଗ ।

— ୧୮ —

ମାନସୀ ଗୋ, ତୁମେ ମଧୁର ମିଳନ
ଫୁଟାଇଛ ଓଠେ ମଦିର ହାସ
ବିଚ୍ଛେଦେ ମୋର ବକ୍ଷେ ଭରିଛ
ଲକ୍ଷ ପ୍ରାଣର ଦହନ ପ୍ରାସ ।

— ୧୯ —

ସଖି !
ଚିନ୍ତା-ଦାନବୀ ଜର୍ଜର କରି
ଚିତ୍ତ ଯେବେଟି ଘାରେ
ତୁମରି କଅଁଳ କୋଳରେ ଶୋଇ ମୁଁ
ନିଶ୍ୱାସ ଟିକେ ମାରେଁ ।
ପ୍ରେୟସି ଗୋ, ତୁମ ପୀୟୂଷ ବଚନ
ମୋ' ତନୁ ମନର ମଧୁ ରସାୟନ

ତପନ ଜୀବନ— ଶୀତ ଚନ୍ଦନ
ଦୁଃଖ ମୋ' ଅପସାରେ
ଚିନ୍ତା ଦାନବୀ ଜର୍ଜ୍ଜର କରି
ଚିତ୍ତ ଯେବେଟି ଘାରେ ।

— ୨୦ —

ଝାଟି କୁଡ଼ିଆର ମାଟି ଅଙ୍ଗନ ତଳେ
ତୁମକୁ ଛାଡ଼ି ମୁଁ ପରବାସେ ଯଦି ଚଳେଁ
ସୀମାହୀନ ପନ୍ଥେ ପଡ଼ିରହେ ସିନା ଦେହ
ଶିଶୁ ପରି ପଥ ଓଗାଳେ ନିବିଡ଼ ସ୍ନେହ ।
ଘନ ଉଦ୍‌ବେଗ ଘେନି ମୁଁ ଯେଦିନ ବୁକେ
ବାହୁଡ଼ି ଆସଇଁ ପୁଣି ଏ କୁଟୀର ମୁଖେ
ସେଦିନ ବି ଦେଖେ ରାଣି,
ଅଚଳ ହୁଅଇ ଚଳ ଚରଣ ମୋ'
ବିଚଳ ହୁଅଇ ବାଣୀ ।

— ୨୧ —

ତୁମେ ଗୋ ସଖି ! ରହିଲେ ଦୂରେ
ରଚିବି ମୁହିଁ ବିଧୁର ସୁରେ
ମଧୁର ଗୀତି ବିରହ-କାଳି-ଦିଆ
ନରମ ତୁମ ମରମ ତଳେ
ବ୍ୟଥାର ଯେଉଁ ବହ୍ନି ଜଳେ
ତହିଁରେ ପୋଡୁ ଦରଦୀ ପ୍ରିୟ-ହିଆ ।

— ୨୨ —

ତୁମେ—
ବାର ବାର ବଧୂ ! ପରିହାସେ ମୋର
ଦେଇଛ ରାଣ
କଅଁଳ ଛାତିରେ ନ ସହିବ ବୋଲି
ଚିର ବିରହର ତୀବ୍ର ବାଣ ।

ମରଣ-ସାଗରେ ବହିଯିବ ଯେବେ
ପରାଣ-ସୁଅ
ନୟନୁଁ ନିୟତ ନ ପୋଛିବ ପ୍ରିୟେ
ମୋ' ଲାଗି ଲୁହ ।
ଦେଖିବାକୁ ଅବା ଲେଖିବାକୁ ମୁଁ ତ
ନ ଥିବି ପାଶେ
ପ୍ରିୟା ଗୋ ଯେ କାଳେ ଜଳୁଥିବ ତୁମେ
ହାଆ-ହୁତାଶେ ।
ଦେଲେ ଅବା ବିଧି ବ୍ୟଥାର ମୂଲ
ହସି ହସି ସଖି ଭାସି ଭାସି ଯିବ
ସେହି ସୁଏ ତୁମ ଜୀବନ-ଫୁଲ ।

— ୨୩ —

ଚତୁରି ! ତୁମ ବିରହ ବେଳ କଥା
କତୁରି ସମ ପରାଣ ଦିଏ କାଟି
ବତୁରି ଯେବେ ଉଠେ ମୋ ଆଖିପତା
ବକ୍ଷ ତଳେ ବ୍ୟଥାରେ ପଡ଼େ ଫାଟି ।
କି ସୁଖ ଦିଏ ମିଳନ ମଧୁବାଣୀ
ତା' ନିକି ତୁମେ ପାର ଗୋ ବୁଝି ରାଣି !
କ୍ଳାନ୍ତ କରେ ଦେଲେ ମୋ ଛାତି ଛୁଇଁ
ମଳୟ-ଦୋଳା ଫୁଲଟି ପରି
ଉଲସି ଉଠେ ମୁହିଁ ।

— ୨୪ —

ତୁମ ଅବସାନ ପ୍ରିୟେ !
କଳ୍ପନା କଲେ ମୁହିଁ କ୍ଷଣେ ଗୋ
ଆତ୍ମା-ବିହୀନ ସମ
ଆପଣାକୁ ବିସ୍ମୟ ମଣେଁ ଗୋ
ମରଣ ନ ଇଚ୍ଛଇ କୀରତି
ମରଣର ଦୁଃସହ ଦଂଶନ ଇଚ୍ଛେ ନା ପୀରତି ।

— ୨୫ —

ଜୀବନ-ସୁଆଦ ନୂଆ ଚାଖୁଥିଲେ ଯେ ବୟସେ ଆମେ ଗୋ !
ନ ଥିଲା ଏ ମନ ସଖି, ସଂସାରେ ଅବା ସଂଗ୍ରାମେ ଗୋ !
ମଧୁର ଏ ପରିଣୟେ ତିକ୍ତତା ଜଞ୍ଜାଳ ଯୋଗ ଗୋ !
ହସି ହସି ସମଭାବେ ଭାଗ ନେଇ କରିବାଟି ଭୋଗ ଗୋ !
ଝଞ୍ଜାର ନିପୀଡ଼ନେ ଶଙ୍କିତ ନ ହେଉ ଗୋ ବକ୍ଷ
କାମ୍ୟ ଜୀବନେ ଆମ ଶାଶ୍ୱତ ଅମୃତ ସଖ୍ୟ ।

— ୨୬ —

ସଖି !

ଶିହରିଲେଁ ଆମେ ନବ ପରିଣୟ
ଶୁଭ ଶଙ୍ଖର ରୋଳେ
ପହିଲି ମଧୁର ପିକ-ପଞ୍ଚମେ
ବନାନୀ ଯେସନ ଦୋଳେ ।
ମିଳନ ରାଗର ଲାଜଲାଜ ଅଭିମାନ
ଦର ଦର ହସା ଅଧର-ମଦିରା ପାନ
ବାସର ନିଶାର ଚାରୁ ଚନ୍ଦନ ବେଶ
ଫୁଲ ମଣ୍ଡିତ ବେଣୀ ସଂହତ କେଶ
ମୁଦିର ନୟନେ ମଧୁର ଚାହାଣି ଚୋରା
ବାନ୍ଧିବି ! ସେ ତ ଚିରଦିନ ଆଗୋ
ଚିରଦିନ ଅପାସୋରା ।
ଅଧୀର ବୟସେ ମଦିର ସ୍ୱପ୍ନେ ମାତି
ପାହିଗଲା ଯେତେ ମୁଦୁ ଗୁଞ୍ଜିତ ରାତି
ନୟନେ ନୟନ ବାହୁ ପରେ ଥୁଆ ବାହୁ
ଏ ଜୀବନେ ହାୟ ସେ କି ଗୋ ଫେରିବ ଆଉ
ଏ ଜନମ ପାରେ ନ ଗଲେଟି ଆମେ ମିଶି
ଭେଟିବା କି ପ୍ରିୟେ ଆଉ ସେ ସୁଯୋଗ ନିଶି ?

— ୨୭ —

ସଖି !

ଆମ ରୁଷା ରୁଷି — ମେଘର ବିଜୁଳିଗାର
ଆମ ମନ ଖୁସି — କୁନୁ କୁନୁ ନଈଧାର
ଆମ କଳିଗୋଳ — ସକାଳ ମେଘର ଡାକ
ଆମ ମନମେଳ — ସୁରଭିତ ଫୁଲ ହାର ।
ଆମ ହସ କାନ୍ଦ — ଶରତ ଶିଉଳି ଝରା
ମାନ ଅଭିମାନ — ପାହାନ୍ତାର କୁଆଁ ତାରା !
ଆମ କଥାଭାଷା — ଅମାନିଆ ବଢ଼ି ପାଣି
ଆମ ରାଗ ରୋଷ — ଭୋଦୁଅର ଟାଣ ଖରା
ମନ ଖୋଲାଖୋଲି — କୁଆଁର ପୂନିଅଁ ରାତି
ବିରହ ମିଳନ — ସୁରୁଯ ଚନ୍ଦର ଭାତି ।
ପ୍ରଣୟ ଆମର — ପାହାଡ଼ି ଝରଣା ନାଚ
ସେନେହ ମମତା — ଅତଳ ଦରିଆ-ଛାତି ।
ଆମ କୋଳାକୋଳି — କୁନି ଶିଶୁ ଖନି କଥା
ପ୍ରୀତି ଦୋଳାଦୋଳି — ମଳୟ ଅମରମତା ।
ସୁଖ ଓ ଦୁଃଖର — କବିତା ଦୁଇଟି ଆମେ
ଭବ ଉପବନେ — ମୁହିଁ ତରୁ ତୁମେ ଲତା ।

□ □

# ପ୍ରିୟା-ବାଣୀ

—୧—

ଭୋଓର ସପନେ — ଚମକ ଲାଗିଲା
ତୁମେ ଯିବ ପରବାସ
ମଉଳି ପଡ଼ିଲା — ପାଂଶୁ ଅଧରେ
ସହସା କରୁଣ ହାସ ।

ନୟନରୁ ଝରି ଅଶ୍ରୁର ଧାର
କପୋଳେ ରଚିଲା କଜ୍ଜଳଗାର
କହିଲ ତୁରିତେ, "ବିଦାୟ ଦିଅ ଗୋ
ନାହିଁ ଆଉ ଅବକାଶ !"
ଭୋଓର ସପନେ ଚମକ ଲାଗିଲା
ତୁମେ ଯିବ ପରବାସ ।
କର୍ମର କଟୁ ତାଗଦା ତୁମକୁ
କଲା ଯେବେ ଆନମନ
ପାରିଲ କି ଶୁଣି ବିକଳେ କେସନେ
ବାହୁନଇ ଯଉବନ !

ମନ୍ଦିର ସ୍ନେହର ମଧୁର ସୁଆଦ
ସୁମରି ତିଳେକ ନ ଚଳଇ ପାଦ
ଫୁଲଟି ପରାଏ ଫୁଟି ଝରିଗଲା
ଦି' ଦିନ ପୀରତି-ରାସ
ଭୋଓର ସପନେ ଚମକ ଲାଗିଲା
ତୁମେ ଯିବ ପରବାସ ।
ତୁମେ ସିନା ଗଲ ସ୍ମୃତିକୁ କେବଳ
କରି ହେ ଗଣ୍ଠିଧନ
ପୋଷା ହରିଣୀଟି- ପରି ତୁମ ପଛେ
ଗୋଡ଼ାଇଲା ମୋର ମନ ।

ରକତର ପ୍ରତି ବିନ୍ଦୁ ଭିତରେ
ଦଂଶିଲା ମୋତେ ତୀକ୍ଷ୍ଣ କେ ଶରେ
କରତ ପରାୟେକ କରତିଲା ବୁକୁ
ମିଳନର ମାୟା ପାଶ
ଭୋଓର ସପନେ ଚମକ ଲାଗିଲା
ତୁମେ ଯିବ ପରବାସ ।

ଯେତେ ପରକାରେ ବୁଝାଇଲେ ପଛେ
ନ ବୁଝିଲା ତିଳେ ମନ

ସେହି ସୁମଧୁର ସମ୍ଭାଷଣ ପ୍ରାଣେ
ଘୋଟାଏ ଆନ୍ଦୋଳନ ।
ଏତେ ଦେଖି ଆଖି ନ ଦେଖିଲା ପରି
ସ୍ମୃତି-ଦରପଣେ ଖୋଜଇ ସୁମରି
ସେହି ସୁନ୍ଦର ମୂରତି ମଧୁର
ସେହି ଚାଲି ସେହି ହାସ
ଭୋଓର ସପନେ ଚମକ ଲାଗିଲା
ତୁମେ ଯିବ ପରବାସ ।

—୨—

ଜାଣି କି ପାରିବ ଗାଆଁ ଗିରିପାରେ
ରହି ପ୍ରିୟ ଏତେ ଦୂରେ
ତୁମରି ସ୍ପର୍ଶ- ଟିକକ ପାଇଁକି
ପରାଣ କେସନେ ଝୁରେ ।
ହୃଦ-ବନ୍ଧନ ହେଉଥାଏ ଯେତେ
ଆଭେଦୁଁ ଆଭେଦତର
ଅଜାଣତେ ଆହା ଉଛଳି ଉଠେ
ବୁକୁଭେଦା ପ୍ରୀତି-ଝର ।

ତୁମ ଆମପରି କୋଟି ବୁନ୍ଦ ବୁନ୍ଦ
ବିଶାଳ ଧରଣୀ ତଳେ
କ୍ଷଣେ ଫୁଟି କ୍ଷଣେ ମିଳାଇ ପଡ଼ଇ
ପ୍ରଣୟ-ସିନ୍ଧୁ ଜଳେ ।

କହି କି ପାରିବ ବନ୍ଧୁ ହେ ମୋର
କହି କି ପାରିବ ତୁମେ
ଛାଡ଼ବାଡ଼ ହୋଇ ଚାଲିଯିବା ଆମେ
ସେ କେଉଁ ଅଜଣା ଭୂମେ ।

ସୁନ୍ଦର ଏଇ ସୁଖର ମର୍ତ୍ତେ
ନାଇଁତ କାର ଚିର ଦାବି

ଏଇ ସତ୍ୟଟି ଅନ୍ତରେ ତୁମେ
ଦେଖିଛ କି କେବେ ଭାବି ?

କାଳ-ଆବାହନେ କେହି ବା ଅଶ୍ରୁ
ପୋଛିବାକୁ ଥିବା ନାଇଁ
ଅନୁରାଗ ଖାଲି ରହିବ ବଞ୍ଚି
ସୀମାହୀନ ଯୁଗପାଇଁ ।

ତୁମ ଆମ ପରି କୋଟି ନାରନାରୀ
ଗଲେଣି ତ କାଳବଳେ
ଆଶ୍ଳେଷେ ଦେଇ ଅମର ଆୟୁଷ
ବାସର ତଳ୍ପ ତଳେ ।

ପ୍ରଣୟର ନାହିଁ ନିର୍ବାଣ ସଖା
ଚିର ସେ ଦୀପ୍ୟମାନ
ଅନ୍ତରତଳୁ ଶୁଭଇ ନାହିଁ କି
ନୀରବତା ଆହ୍ୱାନ ?

ବିରହେ ତୁମର ଶୀତଳ ଜ୍ୟୋତ୍ସ୍ନା
ସୂଚୀ ବିନ୍ଧଇ ପ୍ରିୟ
ବିଧୁର ଅଙ୍ଗେ ଥରୁଟିଏ ତବ
ମଧୁର ସ୍ପର୍ଶ ଦିଅ ।

—୩—

ସକଳର ପଛେ ରୁକ୍ଷ ବଚନ
ବକ୍ଷେ ହୁଏ ମୋ ସହି
ଅଳପକ କଥା ତୁମର କିପାଇଁ
ଚିତ୍ତ ଦିଅଇ ଦହି ।

କେତେ ତ ଶୁଣିଛି ଆଦରର ଡାକ
'ବୋହୂ' 'ମାଆ' 'ସାଆନ୍ତାଣୀ'

ସବୁହୁଁ ମଧୁର କିମ୍ପାଇଁ କୁହ ତ
ତୁମେ ଯେବେ ଡାକ 'ରାଣୀ' ।

କେତେ ବାନ୍ଧବ କୁଣିଆଁ ଚରଣ
ନ ପଡ଼େ ଦୁଆରେ ଆମ
ତୁମକୁ ଦେଖିଲେ ଅଧବାଟୁଁ କିଆଁ
ହାତରୁ ଖସଇ କାମ ?

କେତେ କହନ୍ତି 'ତୁମେ' କେବା 'ତୁଉ'
'ଆପଣ' ପୁଣି ବା କେତେ
ସେହି 'ତୁମେ' ଡାକ ତୁମ ମୁଖୁଁ ଶୁଣି
ଲାଗେ କିଆଁ ନୂଆ ଏତେ ।

ଏ ଜୀବନେ କେତେ ମନଲାଖି ଚିଜ
ନ ଦେଇଛନ୍ତି କିଏ
ଏଡ଼େ ଖୁସି କିଆଁ ଖୋଷିଦେଲେ ତୁମେ
ଗଭାରେ ମୋ ଫୁଲଟିଏ ।

ଦେଖେ ନାହିଁ ମୁଁ ବା ଦୁନିଆରେ କେତେ
ଓଷ୍ଠେ ବିକଚ ହାସ
ତୁମ ସ୍ମିତେ କିପାଁ ହୃଦ-ବନେ ମୋର
ଖେଳିଯାଏ ମଧୁରାସ ।

ଦୁର୍ମଦ ମହା- ଝଞ୍ଜା ପରାୟେ
ଉଦ୍‌ବେଳ ଅଭିମାନ
କ୍ଷଣେ ହୁଏ ସ୍ଥିର ଶୁଣି ତବ ମୃଦୁ
ସସ୍ନେହ 'ମୋଓ ରାଣ' ।

ଭଲ ପାଇବାର ଚରମ ଯେଉଁଠି
ଟିକକେ ମରମ ଖାଏ

ମେରୁ ସମ କଳି ନିମିଷକେ ତହିଁ
ରେଣୁ ସମ ଉଡ଼ିଯାଏ ।

—୪—

ତୁମର ତରଣୀ ଯେଦିନ ଲାଗିଲା
ଆମ ଗାଆଁ ନଈ ଘାଟେ
ରାଣ ଦେଲା ପରି ଅଟକିଲା ପାଦ
ଚାଲୁ ଚାଲୁ ନିଜ ବାଟେ ।

ତୁମ ଫୁଲବନ ସୁରଭି ଯେଦିନ
ସମୀରେ ଆସିଲା ଭାସି
ଆପଣା ମନକୁ ପଇଟାଣ କଲି
କବିତା ମୁଁ ରାଶି ରାଶି ।

ତୁମ ଉତ୍ସବ ଶଙ୍ଖ ଯେଦିନ
ବାଜିଲା ଆସି ଏ କାନେ
ମୋହରି ଭିତରେ ହଜିଗଲି ମୁହିଁ
କେତେ ସ୍ୱପ୍ନିଳ ଧ୍ୟାନେ ।

ସେହି ନାବେ ବସି ଯେଦିନ ଲାଗିଲି
ତୁମ ଗାଆଁ ନଈ ତଟେ
ଭୋଗର ତୀର୍ଥ ଭେଟିଲି ପୁଲିନେ
ପ୍ରେମର କଳ୍ପବଟେ ।

ସେହି ତରୁମୂଳ ଛାଇ ତଳେ ବସି
ତହିଁ କିଛିଦିନ ପରେ
ଦେଖିଲି ସେ ନଈ ପଡ଼ିଲାଣି ଶୋଇ
ନିଷ୍ଠୁର ବାଲିଚରେ ।

ସେ ବନ ନୀଳିମା ଗଲାଣି ତ ଜଳି
ଫୁଟୁଥିଲା ଯହିଁ ଫୁଲ

ସେଦିନ ଯେତେ ମୁଁ ଗାଇଥିଲି ଗୀତ
ନାହିଁ ଆଉ ଆଗ ତୁଲ ।

ଧାଇଁଥିଲା ମନ ମଳୟ-ବାଉଳା
ସପନର ସୁଅ ପିଛେ
ନବ ଯଉବନ ମଦିର ନିଶାରେ
ବୃଥା ସିନା ମିଛେ ମିଛେ !

ସେବିଥିଲି ଯେତେ ସୋହାଗ ଯାମିନୀ
ଜ୍ୟୋସ୍ନାକୁ ସାଥୀ କରି
ହୋଇଛି ସେ ଆଜି ପ୍ରଭାତ-ପାଲଟା
ଅଶୁଚି ବସନ ସରି ।

ସତ୍ୟ ଭିତରେ ରହିଲେଁ କେବଳ
ତୁମେ ଆଉ ମୁଉଁ ଦୁହେଁ
ମର ଏ ଜୀବନେ ଅବଗାହି ସଦା
ସୁଖ ଦୁଃଖର ଲୁହେ ।

—୫—

ନୂଆ ବସନ୍ତ ହସୁଅଛି ମୋଦେ
ଚୂତ ମୁକୁଳର ବାସେ
ମୁଁ ରହିଛି ଏଇ ପଲ୍ଲୀ କୁଟୀରେ
ତୁମେ ଦୂର ପରବାସେ ।

ତୁମ ବେଳ କଟେ କଚିରି ଭିତରେ
ଅସୁମାରି ନଥି ଥାକେ
ବ୍ୟସ୍ତ ମୁଁ ଥାଏଁ ପାଇଟିରେ ଏଠି
ସକାଳୁ ସଞ୍ଜଯାକେ ।

ତୁମ କାନେ ସେଠି ସନ୍ଧ୍ୟା ବଜାର
ଶୁଭେ ଯେବେ ଗହ ଗହ

ବାଡ଼ିର କାମିନୀ    ପହିଲି ସୁବାସ
ବାସେ ମତେ ମହ ମହ ।
ବାସନାରେ ତା'ର    ଚମକି ପଡ଼େଁ ମୁଁ
ଫଗୁଣ ଆସିଛି ବୋଲି
ମନ ଡାକେ ତୁମ    ପାଖେ ପ୍ରାଣ କଥା
କହିବାକୁ ପଦେ ଖୋଲି ।

ତୁମକୁ ଲାଗିଛି ରୋଗ    ଅନଟନ
ଋଣର ତାଗିଦା ସଦା
ମତେ ଲାଗି ଗୃହ    ଶିଶୁ ଜଞ୍ଜାଳ
ଜୀବନ କଲାଣି ଅଧା ।

ରକତ ତୁମର    ଶୋଷୁଅଛି ତେଣେ
ବୃତ୍ତିର କଷାଘାତ
ଦିନରାତି ବାର    ଧନ୍ଦାରେ ପଡ଼ି
ଅବଶ ମୋ ଗୋଡ଼ହାତ ।

ଜୀବନ କି ଖାଲି    ଏଇଆ ଆମର
ଲେଖି ଦେଇଅଛେଁ ଆମେ
ଫେରି ଆସ ତୁମେ    ଦିନଟିଏ ପାଇଁ
ଛାଡ଼ିଦେଇ ସବୁ କାମେ ।

କାମ ତ ଲାଗିଚି    ଲାଗିଥିବ ସଦା
କାମନା ଓଷଧି ସିଏ
ବିଫଳ ଆଜି ତା    ଅସଲ ଗୁଣଟି
ନିରାମୟ କରେ ଯିଏ ।

ଗଦ ପଦ ଟିକେ    କାଟେ ନାହିଁ ଆଜି
ମନକୁ ଗୋ କିଆଁ କିଛି
ନୂଆ ବିଭାଘର    ତୁହେଁ ତ ଆମର
ଏ କି ଭାବ କୁହ ଛି-ଛି ।

ଚଇତ ବୋହୂର ଗୋପନ ନୂପୁରେ
ଫୁଲିଉଠେ ମଧୁରାତି
ଯେଣିକି ଚାହିଁଲେ ଖାଲି ତୁମ ମୁହଁ
ଦିଶିଯାଏ ପ୍ରାଣ-ସାଥୀ ।

ଆଖି ବୁଜି ଦେଲେ କାଲିକି ଦି'ଦିନ
ସେ ବେଳେ କି ହେବ ଭାଳି
ମୂର୍ଖତା ସିନା କପାଳ ଉପରେ
ବୃଥା ଦୋଷ ଖାଲି ଢାଳି ।

ଉଚ୍ଚାଟ କରେ ପିକ-ପଞ୍ଚମ
ଯାମିନୀ ଜ୍ୟୋତ୍ସ୍ନାମୟୀ
ସରି ଯାଉଛିଟି ମିଳନ ସ୍ବଆଦ
କାନେ କିଏ ଯାଏ କହି ।

□ □

# ଯୁଗଳ ଆଳାପ

ଯଦୁ ରାଜା ପାଶେ ମିଳିଲେ ଦିନେକ
ବହୁ ସଦ୍‌ଗୁଣଯୁତ
ସାଧୁ ସୁନ୍ଦର ସରଳ ଉଦାର
ସନ୍ନ୍ୟାସୀ ଅବଧୂତ ।

ପଦତଳେ ନମି ପୁଚ୍ଛିଲେ ନୃପ
ସସ୍ନେହ ମୃଦୁ ଭାଷେ
ନିର୍ଜନ ଥାନେ ଦିବ୍ୟ ଆସନେ
ବସାଇ ଆପଣା ପାଶେ—

''ହେ ମହତମନା ! ସଂସାର ଭୂମେ
ନର-ବିଗ୍ରହ ଧରି
ପୃଥକ କେସନେ ରହିଛ କୁହ ତ
ସଲିଳେ ତଇଳ ସରି ?

ବିସ୍ମୟ ମଣେ, ଶୋକ ସନ୍ତାପ
ଦାବ-ବିଦଗ୍ଧ ଭବ
କ୍ଷୀଣ ଧାସଟିଏ କେସନେ ତାହାର
ମାନସେ ଛୁଇଁନି ତବ ?''

ଭୂପତି-ବଚନେ ଭାସିଲେ ତାପସ
ଅସୀମ ଶକ୍ତିଧର
''ଯେତେ ଗୁରୁ ପାଖୁଁ ଆଣିଛି ଦୀକ୍ଷା
ଶୁଣ ଆହେ ନୃପବର !

ନୟନେ ଏକଦା ପଡ଼ିଲା ନିଷାଦ
ଉଭା ଅବିଚଳ ମନେ
ସାୟକ ହସ୍ତେ, ଚାହିଁଛି ବୃକ୍ଷେ
ତା' ପ୍ରିୟ ବିହଗ ଧନେ ।

ବିବାହ ଦଳର ଯାତ୍ରା ଆଟୋପ
ବାଦ୍ୟର ଝାଇଁ ଝାଇଁ
ଲକ୍ଷ୍ୟ ନିହିତ ଦୃଷ୍ଟିକି ତା'ର
ଟାଳି ତ ପାରିଲା ନାହିଁ ।

ବିଭୁ-ଆରାଧନେ ଲଭି ମୁଁ ଚେତନା
ନିଜ ଅନ୍ତର ପୁରୁଁ
ବାହ୍ୟ ବିଷୟ ବିସୋରି ବ୍ୟାଧରେ
କରିଛି ଜୀବନେ ଗୁରୁ ।

ଆନ ଗୁରୁ ପୁଣି ଶୁଣ ମହାବାହୁ !
ଚତୁର ବଡ଼ଶୀଧର
ଭକ୍ଷ୍ୟ ମୀନେ ଯେ ଢାଳିଥିଲା ତା'ର
ଦୃଷ୍ଟି ଗଭୀରତର ।

ବାଟ ଭୁଲି ତାକୁ ପଚାରିଲି ଯେବେ
ରହିଲା ସ୍ୱକାମେ ରତ
କରଗତ ମୀନ ହେଲା ପରେ ଯାଇ
ନିର୍ଦ୍ଦେଶିଲା ସେ ପଥ ।

ବୁଝିଲି ରାଜନ ! ସାଧନାର ପଥେ
ସଫଳ ନ ହେବା ଯାଏ
ନ କରିବି ମନ ଚଞ୍ଚଳ କେବେ
ଶଙ୍କିତ ଶଶା ପ୍ରାୟେ ।

ଆନ ଏକ ଗୁରୁ ମତ୍ସ୍ୟ ଶିକାରୀ
ତୀବ୍ର ଧିଆନୀ ବକ
ଅଦେଖା ପରାଣ- ହନ୍ତକେ ଯାର
ହୃଦୟେ ନ ଥିଲା ଦକ ।

ଜୀବନେ ଅଟଳ ଅଭିନିବେଶରେ
ହେବାକୁ ଚାହିଁଲେ ବଡ଼
ଭ୍ରୂକ୍ଷେପ ନାହିଁ କରିବି ବିଘ୍ନ
ବିପଦ ଝଞ୍ଜା ଝଡ଼ ।

ନିର୍ବାତ ଶିଖା– ପରାୟେ ରଖିବି
ବିଷ୍ଣୁ-ଶ୍ରୀଚରଣେ ଧ୍ୟାନ
ଭବିଷ୍ୟର ଶତ ବ୍ୟାଘାତେ ଶଙ୍କି
ନ ହୋଇବି ମ୍ରିୟମାଣ ।

ସୂକ୍ଷ୍ମ ନୟନେ ହେ ଭୂପ ! ନିୟତ
ବିଶ୍ୱର ରୀତି ଦେଖ
ଆନ ଗୁରୁ ମୋର ମୁକ୍ତ ବିହାରୀ
ମୀନଧାରୀ ଚିଲ ଏକ ।

ଚଞ୍ଚୁପୁଟେ ତା' ଦିବ୍ୟ ଆହାର
ନିରେଖି ବାୟସମାଳ
କ୍ଷିପ୍ର ଗତିରେ ଘେରି ଚଉଦିଗୁଁ
ପଥ ରୋଧନ୍ତି ତା'ର ।

ପ୍ରାଣ ସଂଶୟେ ଫିଙ୍ଗି ଦେଉଁ ସେ
ମତ୍ସ୍ୟକୁ ଭୂମି ତଳେ
ଦେଖିଲି ଶଙ୍କା ଗଲା ତା' ଉଭେଇ
ଅଗ୍ନି ଯେସନ ଜଳେ ।

କାମନା ରାଶିର ନିର୍ବାଣେ ହୁଏ
ଦୁଃଖର ଅବସାନ
ସେଦିନ ବୁଝି ମୁଁ ଦେଇଛି ଚିଲକୁ
ଅନ୍ତରେ ଗୁରୁସ୍ଥାନ ।

ଆଉ ଏକ ଗୁରୁ ଶୁଣ ନୃପମଣି !
ମଧୁ-ଲୁବ୍‌ଧକ ଅଳି
ଫୁଲୁଁ ଫୁଲୁଁ ଯେହୁ ସଞ୍ଚଇ ମହୁ
କୃପଣ ଯକ୍ଷ ଭଳି ।

ଦେଖିଲି ଦିନେକ ଦୁଷ୍ଟ ବାଳକ
ଫଣା ପାଶେ ମିଳି ବହୁ
ତୂଳୀରୁ ଅଳତା ଚିପୁଡ଼ିଲା ପରି
ନିଃଶେଷି ନେଲେ ମହୁ ।

ସଞ୍ଚୟ କଲେ ବିପୁଳ ଚିତ୍ତ
ଉଦର-କଷଣ ସହି
ଶେଷେ ସିନା ତାହା ନଈସୁଅ ପରି
ଅଜ୍ଞାତେ ଯାଏ ବହି !

ପ୍ରୟୋଜନ-ହୀନ ସଞ୍ଚୟନର
ଦେଖି ଏହି ପରିଣାମ
କୃପଣ ଭ୍ରମରେ ଗୁରୁ କରି ପୁଣି
ସ୍ମରଇ ତାହାରି ନାମ ।

ଚଉଷଠି ଗୁରୁ କରି ମୁଁ ଏସନ
ନିର୍ମଳ ବାତ ପରି
ବିଶ୍ୱ ଭୁବନେ ଚିର ଉଲ୍ଲାସେ
ରଖିଛି ହୃଦୟେ ଭରି ।''



# ଯକ୍ଷବଧୂର ଅନୁଚିନ୍ତା

ପୁରେ ବସି ଝୁରେ ଘୋର ଶୋକଭାରେ
ବିବଶା ଯକ୍ଷକାମିନୀ
କାନ୍ତରେ ଚାହିଁ ଗଲା କେତେ ପାହି
ଗନ୍ଧ-ଆକୁଳ ଯାମିନୀ
ହୃଦେ ଜାଳି ବ୍ୟଥା-ପାବକ
ଚରଣ ଯୁଗଳେ ଦୀପ୍ତି ମଣ୍ଡଳେ
ଫିକା ପଡ଼ିଗଲା ଯାବକ
କାନ୍ତ ବାହୁଡ଼ି ନଇଲେ
ଛାର ହତଭାଗୀ— ପ୍ରୀତିଟିକ ଲାଗି
ଏତେ ଯା' କଷଣ ସହିଲେ ।

ବରଷା ରାତିରେ ମୋ' ପ୍ରିୟ-ଛାତିରେ
ଭେଦିଥିବ ଶତ ବେଦନ
ମୋହ ସ୍ନେହ ଭାଳି ଲୁହଧାର ଢାଳି
କରିଥିବେ କେତେ ରୋଦନ
ସୁଷମିତ ଗିରି ଉଆସେ
ଚପଳାର ଶିରୀ— ଛଟକେ ଶିହରି
ଉଠୁଥିବେ ଗୁରୁ ଶ୍ୱାସେ
ତା' ଦେଖି ବରଷା ଛଇଳା
କହିଥିବ ତା'ରେ, "ଏ ସୁଖ ନିଶିରେ
ପ୍ରିୟା ଯାହା ଦୂରେ ରହିଲା ।"

ନୟନାନନ୍ଦ ଶରତ ଚାନ୍ଦ
ହସିଲେ ନଭସ ଶିରସେ
ପଡ଼ିଥିବେ ଢଳି ତାପେ ତାର ଜଳି
ଅତୁଳ ପ୍ରଣୟୀବର ସେ
ଶେଫାଳିର ମୃଦୁ ମହକ
ପୀରତି-ରଙ୍କ ନାସାରେ ତାଙ୍କ
ଭରି ଦେଇଥିବ ଦହକ
ଜ୍ୟୋତ୍ସ୍ନାହସିତ ଲଗନେ
ନିଥର ନିଶୀଥେ ଭାଳୁଥିବେ ମତେ
ଉଦାସେ ଅନାଇ ଗଗନେ ।

ମଧୁ ବସନ୍ତ ପିକ କଳରୁତ
ଶତ ସନ୍ତାପ ସରଜେ
ମଳୟ ପ୍ରବାହ ଦୋହଲାଇ ଦେହ
ଚଉପାଶେ ମୋର ଗରଜେ
ତଥାପି ଜୀବନ ଦୟିତ !

ଦିନ ଗଣି ଗଣି ରହିଛି ପାଷାଣୀ
କେବେ ହେବ ଶାପ କ୍ଷୟିତ
ହସିବ ପୁଣି ଏ ଭବନ
ବକ୍ଷେ ଜଡ଼ାଇ ତୁମରେ ହେ ସାଇଁ !
ସଫଳ କରିବି ଜୀବନ ।

❑ ❑

# ନିର୍ବାଣ ପଥେ

ଅର୍ଦ୍ଧ-ନିଶିର ଚନ୍ଦ୍ର ଢାଳିଛି
ଦିଗ୍‌ବଳୟର ଶିରେ
ସୁପ୍ତ ବନାନୀ ଶୀତଳ ସମୀରେ
କଡ଼ ଲେଉଟାଏ ଧୀରେ ।

ନିର୍ଜ୍ଜନ ଗିରି ନିଃସୀମ ପଥେ
ରହିଛି କେବଳ ଚାହିଁ
ଆବେଗେ ବୁଦ୍ଧ ଚାଲିଅଛନ୍ତି
ନିର୍ବାଣ ପାଇଁ ବାଇ ।

ଦୁର୍ମ୍ମଦ ସ୍ରୋତ ସମ୍ମୁଖେ ଏକ
ପାଷାଣ ବନ୍ଧ ସରି
ଅଶ୍ୱପାଳକ ଛନ୍ଦକ ଉଭା
ବୁଦ୍ଧ-ଚରଣ ଧରି ।

କହେ ଛନ୍ଦକ, "ଏ ଘନ ନିଶୀଥେ
ଯାଉଅଛ ପ୍ରଭୁ କାହିଁ ?
ଅନ୍ଧାରେ ପୁଣି ଜଣେ ହେଲେ ତୁମ
ସଙ୍ଗରେ କେହି ନାହିଁ ।

ବିଶାଳ ରାଜ୍ୟ ପରଜାପୁଞ୍ଜ
ସ୍ୱର୍ଣ୍ଣ କିରୀଟ ଛାଡ଼ି
ଘୋର ଦୁର୍ଗମ କଣ୍ଟକ ପଥେ
କେସନେ ଯାଉଛ ମାଡ଼ି ?

ତେଜି ନନ୍ଦନ ପୁଷ୍ପବାଟିକା
କ୍ଷତ୍ରିୟ କରବାଳ
ତୁଷାର ଶୁଭ୍ର କୋମଳ ସୁପାତି
ତୁଙ୍ଗ ସଉଧମାଳ;

କେସନେ ଯାଉଛ ନିର୍ମମେ କାଟି
ଲକ୍ଷ ବୁକୁର ମାୟା
ସ୍ନେହଶୀଳ ପିତା ବନ୍ଧୁ ସ୍ୱଜନ
ଶିଶୁ ସନ୍ତାନ ଜାୟା ?

ପ୍ରିୟତର ପୁରୀ ଅନ୍ଧାର କରି
ବନେ କେଉଁ ସୁଖ ପାଇଁ
କି ସପନ ଦେଖି ବାତୁଳ ପରାୟେ
ଆଗକୁ ଯାଉଛ ଧାଇଁ ?

ନିର୍ଜନ ବନେ ବନିତା ସମାନ
ଯୋଗାଇବ କିଏ ଆସି
ବେଳ ଜଗି ତବ ମନୋମତ ଯେତେ
ଅଶନ-ବସନରାଶି ?

ବିଶ୍ରାମ ଲାଗି କକ୍ଷ ନାହିଁ ତ
ଗହନ କାନନ ଭୂମେ
ତଳ୍ପ ଅଭାବେ କୁହ ତ କେଉଁଠି
ଶୟନ ରଚିବ ତୁମେ ?

ଫେରି ଚାଲ ଏବେ କହୁଛି କୁମାର !
କପିଳବସ୍ତୁ ପୁରେ
ଝୁରି ଝୁରି ସିନା ସରିଯିବ ଦେଶ
ରହିଲେ ତୁମେ ହେ ଦୂରେ ।"

ବକ୍ଷତଳେ ଯେ ଲକ୍ଷ ଝଡ଼ର
ଦୁର୍ବାର ବେଗ ଧରି
ନିର୍ବାଣ ପଥ ସନ୍ଧାନେ ଚାଲେ
ସେ କି ହେବ ସ୍ଥାଣୁ ପରି ?

ଅମ୍ବୁଧି କୋଳେ ଧାଏଁ ଯେ ସରିତ
ଲୋଳ ହିଲ୍ଲୋଳ ମଦେ
ସେ କି ଆଉ କେବେ ରଚଇ ଉଜାଣି
ବନ୍ଧୁର ଗିରିପଦେ ?

ସସ୍ମିତେ ଖାଲି ଭାଷିଲେ ବୁଦ୍ଧ
"ନ କହ ସେ କଥା ମତେ
ବାହୁଡ଼ିଯିବା କି ସମ୍ଭବ ଆଉ
ଘୋର ସଂସାର ପଥେ ?

ବିଶାଳ ବିଭବ ମାୟା ମରୀଚିକା
ତିଳେ ସେଥି ସୁଖ ନାହିଁ
ସମ୍ପଦ ବୋଲି ଦିଶେ ଯା ସେ ସିନା
ଦୁଃଖର ଘନ ଛାଇ !

ଇନ୍ଦ୍ରିୟପର ଭ୍ରାନ୍ତ ମାନବ
ଅଳୀକ ସେନେହ ଆଶେ
ଦୁଇଦିନ ପାଇଁ ହୋଇଛି ବଦ୍ଧ
ସ୍ୱାର୍ଥର ନାଗପାଶେ ।

ରୋଗ ଜରା ଶୋକ ମୃତ୍ୟୁ ସକଳ
ନିଜ ଦୁଷ୍କୃତି ଫଳ
ନିଜେ ଦହି ହୁଏ ସୃଷ୍ଟି କରି ସେ
ଦୁଃସହ ଦାବାନଳ ।

ସୁନ୍ଦର ଏଇ ପ୍ରକୃତି କୋଳ
ସଦା ଉଲ୍ଲାସେ ଭରା
ଢାଳଇ ବିପୁଳ ତୃପ୍ତି ଆମୋଦ
ବିଜନ ଏ ବନଧରା ।

ଜନନୀରୁ ବଳି ଯୋଗାଏ ଆହାର
ଶତ ସୁସ୍ୱାଦୁ ଫଳେ
ତୃଷା ନିବାରଇ ସ୍ୱତ ଶୀତଳ
ମଧୁର ଝରଣା ଜଳେ ।

ଘଞ୍ଚ ବିଟପୀ ଛାୟା ସୁଶୀତଳ
ଚାରୁ ଚାନ୍ଦୁଆ ଟାଣି
ମର୍ମର ତାନେ ଡାକଇ ପଥିକେ
ଆଦରେ ପ୍ରସାରି ପାଣି ।

ବନ୍ଧୁ ସମାନ ସୁଖ ଦିଏ ବନ
ବାୟୁ-ବିଧୂନିତ ଗାନେ
ବିହଗର ରୁତେ କୋମଳ ମରୁତେ
ନିର୍ଝର କଳତାନେ ।

ମୁଗ୍ଧ ଏ ପୀଠେ ସୁଖଶୋହାଭରା
ଦେଖି ଶାଶ୍ୱତ ଧନ
ବିଶ୍ୱର ଆଉ ନଶ୍ୱର ସୁଖେ
ବଳିବ କି କେବେ ମନ ?

ସଂସାର ଘର ମୁଖର ନିୟତ
ଦୈନ୍ୟ ବେଦନ ସ୍ୱରେ
ବାଧା ଦିଅ ନାହିଁ ଛନ୍ଦକ ! ଆଉ
ଏ ଶୁଭ ଯାତ୍ରାପରେ ।

ଶାନ୍ତ ନୀରବ କାନ୍ତ ଏ ଦେଶ
ପ୍ରାଣୁଁ ବଳି ମୋର ପ୍ରିୟ
ଏଇ ମାହେନ୍ଦ୍ର ମଧୁର ଲଗ୍ନେ
ଦିଅ ହେ ବିଦାୟ ଦିଅ ।

ରାତି ଆସେ ପାହି ଯାଅ ତୁମେ ଫେରି
ମୁଁ ଯାଏଁ ମୋହର ପଥେ
ସୀମାହୀନ ଦୂରୁଁ ନିର୍ବାଣ ଡାକ
ଏଇ ଯେ ଶୁଭୁଛି ମତେ ।"



## ଜୀବନ ଭିକ୍ଷା

ତତ୍ତ୍ୱଦରଶୀ ଶାକ୍ୟସିଂହ ଶିଷ୍ୟମେଳେ
ମିଳିଲେ ଏକଦା ଜନପଦେ ଏକ ସଞ୍ଜବେଳେ ।

ବିଜୁଳି ପରାୟେ ଏ ସୁଖ ବାରତା ନିମିଷକରେ
ଖେଳିଗଲା ଶତ ବିରାଟ ସଉଧେ ମାଟିର ଘରେ ।

ଧନ୍ୟ ସେ ମାଟି ପରଶଇ ଯାରେ ମହତ ଜନ
ମିଳନେ ଯାଙ୍କ ସାର୍ଥକ ହୁଏ ମଧୁର କ୍ଷଣ ।

ଶୁଣି ଏ ବାରତା ବରଜି ସକଳେ ବସିଲା ଠାଇଁ
ତ୍ୱରିତ ଗତିରେ ବୁଦ୍ଧ-ଚରଣେ ମିଳିଲେ ଯାଇଁ ।

ସେହି ପଦଧୂଳି ଘେନିବା ପାଇଁକି ଭକତିଭରେ
ପୂର ନରନାରୀ ଧାଇଁଲେ ନଗର ସରଣୀ ପରେ ।

ସାର୍ଥକ ହେଲା ଜୀବନ ଆଶିଷ କଣିକା ପାଇ
ଏଭଳି ସୁଯୋଗ ମିଳେ କି ସହଜେ ଭାଗ୍ୟେ କାହିଁ ?

ଯାଚନା ପାତକ କ୍ଷୟହୁଏ ଯାର ପୁଣ୍ୟ ନାମେ
ସ୍ୱେଚ୍ଛାରେ ଆଜି ଅବତୀର୍ଣ୍ଣ ସେ ପଲ୍ଲୀଗ୍ରାମେ ।

କିଏ କେତେମତେ ଶରଣ ନେଲେ ସେ ଅଭୟ ପଦେ
ରୋଗ ଶୋକ ବ୍ୟଥା ଯାହାର ଯା ଥିଲା ସେ ଜନପଦେ ।

ଚିରବନ୍ଧ୍ୟା କେ ପ୍ରାର୍ଥିନୀ ହେଲା ତନୟ ପାଇଁ
ଶିଷ୍ୟ ହେବାର ବରମାଗେ କେ ବା ଚରଣେ ଯାଇ ।

ଶୁଣି ଜନମୁଖୁଁ ନରନାରାୟଣ କରଣି ଗାଥା
ହେଲା ଉପଗତ ସନ୍ତାନହରା ବିଧୁରା ମାତା ।

ଅଞ୍ଜଳି ପୁଟେ ଅଶ୍ରୁଳ ମୁଖେ ବୁଦ୍ଧପାଶେ
ବାଷ୍ପଜଡ଼ିତ କଣ୍ଠେ ଭାଷିଲା ରୁଦ୍ଧ ଭାଷେ—

"ଶୋକ ତାପ ପରା ହରୁଛ ତୁମେ ହେ ମହତ ଜନ !
କୋଳେ କି ଫେରାଇ ଦେଇ ପାରିବ ମୋ' ହଜିଲା ଧନ ?"

ବୁଝିଲେ ବୁଦ୍ଧ ଜନନୀ ହୃଦୟ, ଭାଷିଲେ ଧୀରେ
"ଏଇଥିପାଇଁ କି ଭାସୁଛ ଗୋ' ତୁମେ ନୟନ-ନୀରେ ?

ପ୍ରାଣ ସଂଚାର ଶକ୍ତି ଅଛି ମୋ' ମର୍ତ୍ତ୍ୟଭୂମେ
ମାତର ଗୋଟିଏ ଆଦେଶ ମୋର କି ପାଳିବ ତୁମେ ?"

ଆଶ୍ୱାସ ପାଇ କ୍ଷଣକେ ମାତାର ମଳିନ ମୁହଁ
ଆଶାର ଆଲୋକ ଉଠିଲା ଉଜଳି, ଶୁଖିଲା ଲୁହ,

କହିଲା ଅଧୀରେ, "ଆଜ୍ଞା ହେ ଦେବ ! ଶୁଣିଲେ ମୁଖୁଁ
ପ୍ରୟୋଜନ ହେଲେ ରକତ ଦେବି ମୁଁ ଚିରି ଏ ବୁକୁ ।"

କହିଲେ ବୁଦ୍ଧ, "ରକତରେ ମାତ, ଲୋଡ଼ା ମୋ' ନାହିଁ
ଆଣି ପାରିବ କି ମୁଠିଏ କେବଳ ସୋରିଷ ଯାଇ ?"

ସୋରିଷ ମୁଠାଏ ! ହରଷେ ବିଭୋଳା ହୋଇଲା ନାରୀ
ଗଦ ଗଦ ଭାବ ନୟନେ-ଓଷେ ହେଲା ତା' ବାରି ।

ଆବର ବୁଦ୍ଧ ଭାଷିଲେ, "ଆଣିବ ଜନନୀ ଅୟି ।
ଏସନ କୁଟୀରୁଁ ସୋରିଷ, ମୃତ୍ୟୁ ପଶିନି ଯହିଁ ।

ସେହି ସଷର୍ପ କରି ଦେଲେ ମୁହିଁ ମନ୍ତ୍ରପୂତ
ମରଣ-ଦୁଆରୁଁ କ୍ଷଣକେ ଫେରିବ ତୁମରି ସୁତ ।"

ତକ୍ଷଣେ ସୁତ-ଆଶାୟିନୀ ମାତା ଚଳିଲା ବେଗେ
ଖେଳିଗଲା କିବା ବିଜୁଳି-ଝଲକ କୃଷ୍ଣ ମେଘେ !

ଭ୍ରମଣେ ତାହାର ଦୀର୍ଘ ବରଷ ଗଲା ଯେ ବହି
କୁଟୀର ସେ ଏକ ନ ଦେଖିଲା ଯମ ପଶିନି ଯହିଁ ।

ସଂସାର-ଭ୍ରମ ଅଜ୍ଞାନ-ତମ ହୋଇଲା ନାଶ
ବୁଝିଲା ବୃଦ୍ଧା ମୃତ୍ୟୁ-ଧରାର ନିତ୍ୟ ରାସ ।



## ଘାସର କବର

ଦିଲ୍ଲୀ ସହରେ କବରଖାନାର ଗୋଲାପବଣେ
ହଜାର ହଜାର କବରେ ହୋଇଛି ଠିଆ
ଗୋଟିଏ କେବଳ ଅଜଣା ଭଳି ସେ ଅଗଣାକଣେ
ଖୋଲା ହାଉଆକୁ ଖୋଲି ଦେଇଅଛି ହିଆ ।

ଊର୍ଦ୍ଧ୍ୱଭାଗରେ ସାମିଆନା ପରି ନେଳିଆ ନଭ
ବୁକୁରେ ସବୁଜ ଘାସର ଗାଲିଚାଟିଏ
ପ୍ରକୃତିର ସେ ସରସ ସରାଗ ମୁକୁଳା ବୁକେ
ହଜି ଯାଇଅଛି ମିଳନେ ମାଟିର ଦିହେ ।

ବିଳାସ-ଛଇଳ ରଜାପୁଅ ପାଖେ ଭିକାରି ପରି
ମାଟିର କବର ଏଇ ଯେ ଯାଉଛି ଦେଖା,
ତାହାରି ଭିତରେ ବିରାମ ଘେନିଛି 'ଜାହାନ୍ନାରା'
ବାଦଶା-ଦୁଲାଲୀ ଅତୁଳ ରୂପର ଲେଖା–

ବନ୍ଦୀ ପିତାର ସେବାପାଇଁ ସିଏ ସକଳ ଛାଡ଼ି
ତ୍ୟାଗର ଜୀବନ ବରିଥିଲା କାରାବାସେ
ମୃତ୍ୟୁ-ଧୂସର ଓଷ୍ଠ-ପୁଟରେ ବୁକୁର ବାଣୀ
କହି ଯାଇଥିଲା ବେଦନା-ଆତୁର ଭାଷେ ।

"ଧନ ଦଉଲତ ମାନ ସଂଭ୍ରମ ବିଳାସ ଶିରୀ
ମଣିଷ-ଜୀବନ କରିଦିଏ କେଡ଼େ ହୀନ,
ତାହାରି ଭିତରେ ବନ୍ଧନେ ମତେ ରଖିବ ନାହିଁ
ତତ୍ତ୍ୱ ମୁଁ ତାର ବୁଝିଅଛି ଚିରଦିନ ।

ମର୍ମର-ଗଢ଼ା କମ୍ର କବର ନାହିଁ ମୋ ଲୋଡ଼ା
ମରଣ-ଲୋକେ ମୁଁ ଚାହୁଁ ନାହିଁ କାରାଗାର,
କାମନା ମୋହର ମୁକୁଳା ବଣର ମୁକୁଳା ବାଆ
ନୀଳ ଗଗନର ମୁକୁଳା ଆଶିଷଧାର ।"



# ଖଦ୍ୟୋତିକା

## ଖଦ୍ୟୋତିକା

ଦିବସ-ଦୀପର ନିର୍ବାଣ ଦେଖି
ସୁଦୂର ଚକ୍ରବାଳେ
ନିଘନ ତିମିରେ ରହି ରହି କିଏ
ଶୁଭ୍ର ଆଲୋକ ଢ଼ାଳେ ?

ଧରଣୀରେ ଯେବେ ଆସଇ ସୂର୍ଯ୍ୟ
ପକାଇ ପ୍ରଥମ ପାଦ
ଖଦ୍ୟୋତିକାର ମହତ କର୍ମେ
ଅରପେ ଧନ୍ୟବାଦ ।

## ଧୂପ

ଏଇ ସଞ୍ଜ ଧୂପର ବାସ
ସତେ ଅବା କେଉଁ ଦରଦୀ ହିଆର
ଭାଷାହୀନ ଉଚ୍ଛ୍ୱାସ ।

## ପ୍ରଦୀପ

ନିରଳସ ଏକ ନିରବ ଭାବୁକ ସରି
ସନ୍ଧ୍ୟାରେ ଏଇ ସ୍ତିମିତ ପ୍ରଦୀପ ଚାହେଁ,
କ୍ଷିପ୍ତ ମାନସେ ଚିନ୍ତା ହଜିଲା ପରି
ସମୀରଣେ ଶିଖା ଶୂନ୍ୟେ ମିଳାଇଯାଏ ।

## ମାଟି

ଏକଇ ଅମୃତାଧାରୁ ନାନା ସ୍ୱାଦ ମାଟି
ଉଦ୍ଭିଦ ଜଗତ ମଧ୍ୟେ ଦେଇଅଛି ବାଣ୍ଟି—

ସମଗର୍ଭୁଁ ଜନ୍ମି ଯଥା ଅପତ୍ୟ ନିକର
ବୟଃକ୍ରମେ ହୋଇଥାନ୍ତି ନାନା ଗୁଣାଧାର ।

## ମାଟି-ମାଆ

ଯୁଗେ ଯୁଗେ ବିଶ୍ୱମୁଖେ ଭରେ ଯେ ଅଶନ
ଲୀଳା ରଚେ ତଳେ ତାର ଅନନ୍ତ ଜୀବନ ।
ଚରାଚର ପାଳେ ସେହୁ ନିଜ ବୁକୁ କାଟି
ସେହି ମୋର ସର୍ବଂସହା ମୌନମୟୀ ମାଟି ।

## ମାଟିର ମାୟା

ନୈଶ ଗଗନ ପୁଷ୍ପିତ କରି
ଥାଉ ପଛେ ତାରା ଉଇଁ
ଭଲପାଏଁ ମୁହିଁ ଅଙ୍ଗନ-ଭରା
ଶୁଭ୍ର ମାଳତୀ ଯୂଇ ।

ମେଘଦେଶେ ଯେତେ ବିଲସୁ ଦାମିନୀ
ଅଜାଡ଼ି ଅମ୍ବୁଧାରା
ମନେ ପଡ଼େ ମୋର ମାଟି କୁଡ଼ିଆର
ସଜଳ ନୟନ ତାରା ।

## ଧରାର ମୋହ

ସରଗ-ବିଳାସ ପ୍ରୟାସୀ ନୁହେଁ ମୁଁ
ପୀୟୂଷେ ନ ବଳେ ମନ
ନଦୀଜଳ ସୁଧା ଧରାଟି ମୋହର
ଚାରୁ ନନ୍ଦନବନ ।

## ଫୁଲ

ବିଶ୍ୱର ସେବାଲାଗି ଜନ୍ମ ତା' ମହୀରେ
ବଚନେ ତା' ସୌଷ୍ଠବ ହୁଏ ନାହିଁ କହି ରେ

କ୍ଷଣେ ପଛେ କହୁ କଥା
ସାର୍ଥକ ଜନମ ତା'
ଅନ୍ତର ଭାଷା ତା'ର ଆଭାସଇ ଲପନ
ସ୍ରଷ୍ଟାର କ୍ଷଣିକ ସେ ସୁକୋମଳ ସପନ ।

## ନୀଳ କଇଁ

ରୂପସୀର ଚାରୁ ସଜଳ ଚାହାଣି ସତେ
ନୀଳ ଉତ୍ପଳ ସମ
ପଙ୍କେ ଫୁଟିଛି ବିଧି-ଶିଳ୍ପୀର ଏଇ
ପ୍ରାଥମିକ ଉଦ୍ୟମ ।

## ସୂର୍ଯ୍ୟମୁଖୀ

ଚାହିଁଛୁ ବିମୁଗ୍ଧ ନେତ୍ରେ
ଊର୍ଦ୍ଧ୍ୱମୁଖେ
ପତିପ୍ରାଣ ଭଳି
ଅଂଶୁମାଳୀ ସୂର୍ଯ୍ୟପଦେ
ଢାଳିବାକୁ
କନକ-ଅଞ୍ଜଳି ।

## ଗୋଲାପ

ଅରୁଣ-ଅଧରା ସ୍ମିତ-ଶିରୀ ଘେନି
ଏଇ ଫୁଲ ଅପସରୀ
ଅଙ୍ଗନ ତଳେ ହୋଇଅଛି ଉଭା
ମୂର୍ତ୍ତ ସପନ ଧରି ।
ପ୍ରେମ-ଉଚ୍ଛଳ ଅନ୍ତରେ ରଚେ
ଯୌବନ ଚିର ବାସ;
ବେଦନା-ବିଧୁର ଅଧରେ କି କେବେ
ବିକଶେ ମଧୁର ହାସ ?

## ଝରା ଶେଫାଳି

କେଉଁ ଦେବତାର କ୍ଷଣିକ ଆଶିଷ
ଶୁଭ୍ର ପାଖୁଡ଼ା ଧରି
ସୁନ୍ଦର ଏଇ ଶରତ ସକାଳେ
ଭୂତଳେ ପଡ଼ିଲୁ ଝରି ?

## ଲତା

ଲତିକାଟି ଯେଉଁଦିନ ଫୁଲ-ଓଠେ ହସିଲା
ମହୁଆ ମଧୁପ ମେଳା ପାଖେ ତା'ର ବସିଲା ।
ମଳୟ କହିଲା ପିକେ ବୁଲୁ ବୁଲୁ ବନରେ,
''କାହା ଲାଗି ଶୋହିନୀ ସେ କାହା ଲାଗି ମୋହିନୀ
ସେକଥା କି ଆଜି ଆଉ ଅଛି ଲତା-ମନରେ ।''

## ପୁଷ୍ପିତା ଲତା

ପହିଲି ଫୁଲଟି ଧରି
ହସେ ନବ ପ୍ରସୂତିକା ଲତା
ମୁଖେ ତା' ଉଠିଛି ଫୁଟି
ଅନୁପମ ବାତ୍ସଲ୍ୟ ମମତା ।

## ଦୂର୍ବା

ଜୀବନେ ବିକଶେ ତୋର
ରୁଦ୍ରତାର ନିଷ୍ପେଷଣ ତଳେ
ତଥାପି ବଦନେ ତିଳେ
ଶୋଚନାର ଚିହ୍ନ ନାହିଁ ଝଳେ ।
କଠୋର ଧୈର୍ଯ୍ୟର ତୁହି
ବିଶ୍ୱେ ଏକ ମୂର୍ତ୍ତ ଅବତାର;
ଲକ୍ଷ ଝଡ଼, କୋଟି ବିଘ୍ନ
ପଦେ ତୋ'ର ବାଢ଼େ ନମସ୍କାର ।

## ପ୍ରକୃତି

ଦିବସେ ଆବରୁ ଧୋବ ପହରଣ
ନୀଳ ଛିଟଶାଢ଼ି ନିଶାରେ
ତାପସୀର ବେଶେ କେବେ ଆସୁ, କେବେ
ବାସକସଜ୍ଜା ଭୂଷାରେ ।

## ଲୀଳା-କନ୍ଦୁକ

ଦୁଇ ହାତେ ଦୁଇ କନ୍ଦୁକ ଘେନି
ଖେଳେ ପ୍ରକୃତି ବସି—
ଉଷା-କରେ ଧରେ ରକ୍ତିମ ରବି
ପ୍ରଦୋଷର କରେ ଶଶୀ ।

## ଷଡ଼ଋତୁ

ରୂପେ ନିରୁପମା ଛଅଟି ଭଉଣୀ
ଗୋଟିଏ ଗରଭୁଁ ଜାତ,
ମୃଦୁ ପାଦପାତେ ଆସଇ ମରତେ
ଧରି ଜଣେ ଆନ ହାତ ।

## ବସନ୍ତ

କେଉଁ ରାଇଜର
ସୁଷମା-ବିଳାସୀ
ତରୁଣ ଏ ରୂପକାର
ଧରଣୀର ଏଇ
ଝରା ଫୁଲ ପଥେ
ଯାଏ ଆସେ ବାର ବାର ।

## ମଳୟ

କେଉଁ ସ୍ନେହଶୀଳା ବଧୂଟି ହାତର
ସୁକୋମଳ ଏକ ପରଶ
ସୌରଭ-ଦାନେ ନିଖିଳ ପରାଣେ
ସଞ୍ଚାରେ ନବ ହରଷ ?

## ଗୋଧୂଳି

ବାରୁଣୀ-ଦେଉଳ- ପହଡ଼ ଫିଟାଏ
ନିତି ଯେ ପ୍ରଦୀପ ଜାଳି
କନ୍ୟା ସେ କାର, କାର ବରବଧୂ,
କା ନୟନ-ସଞ୍ଚାଳି ?

ହୋଇଥାଉ ପଛେ କନ୍ୟା ସେ କାର
ବଧୂ ଅବା ପୂଜାରିଣୀ,
ସ୍ମିତ-ବଦନେ ତା' ଗୋଲାପୀ ରାଗଟି
ନିଏ ଅନ୍ତର କିଣି ।

ସ୍ୱପ୍ନ ସମ ଯେ କମ୍ର ସୁଷମା
ଆଖି ଆଗେ ଉଠେ ନାଚି,
ଶୋଭା-ସୃଜନେ ସେ ପ୍ରଥମ ସୋପାନ
ବିଶ୍ୱେ ନେଇଛି ବାଛି ।

## ଶିଶିର-ଉଷା

ଶୁଚି ଶୁଭ୍ର-ବସନା ଏ ତରୁଣୀ ତାପସୀ
କାର ଧ୍ୟାନେ ନିମଗନା ପ୍ରାଚୀ ମୂଳେ ବସି ?

## ଇନ୍ଦ୍ରଧନୁ

କୁଆଡ଼େ କେହି ନାଇଁ ମେଲାଇ ଦେଲା କିଏ
ଆକାଶ ପଥଧାରେ ରଙ୍ଗ ଛତାଟିଏ ?

ମୁଗ୍‌ଧେ ଚାହୁଁ ଚାହୁଁ　　କେ ପୁଣି ଦେଲା ବୁଜି
କାହାର ଛତା କିଏ　　ନ ହେଲା ତିଳେ ବୁଝି ।

## ଚାନ୍ଦ

ବିନା ଉଭିଦେ　　ବରଷକେ ଅଧେ
ଫୁଟାଏ ସେ କେଉଁ ମାଳୀ
ଏଇ ଫୁଲଟିରେ　　ଖୋଷି ଯା' ଚିକୁରେ
ହସଇ ଯାମିନୀ-ବାଳୀ ।

## କୁଆଁତାରା

ସରଗ-ନଈର
ପରାଚୀ-ତୁଠରେ
ପ୍ରଭାତ-ସିନାନ ସାରି
ଗୃହେ ଚଳେ ଉଷା
ଏଇ ପଦୁଅଁଟି
ସରାଗେ ଗଭାରେ ମାରି ।

## ସାଧବ ବୋହୂ

ଏ ଲଗନେ ସତେ　　କେଉଁ ମାଆ ତା'ର
ଝିଅକୁ କରିଲା ବିଦା !
ଆଖି ପାଉ ନାଇଁ　　ଦିଗ ଦିଶୁ ନାଇଁ
ଚାହିଁଲେ ନୟନ ସିଧା ।
ପଥେ ଚାଲେ ବୋହୂ　　ସଘନ ଗଗନେ
ଗରଜେ ଅଶନି-ଭାଟ,
ଥିର ପାଦପାତେ　　ପ୍ରିୟ ଭବନେ ତା
ପହରି ଏ ନାଳି ପାଟ ।

## ଅଦିନ କୁହୁ

ଅଦିନେ କାହିଁ ଶଙ୍ଖଟିଏ
ବାଜିଲା କେଉଁ ପୁରେ ?
ମାଧବ କାହିଁ ? ମଳୟ କାହିଁ ?
ଚକିତେ ବନଝୁରେ ।

## କାକଳି

ଚନ୍ଦ୍ରିତ ଧରା ଜ୍ୟୋତ୍ସ୍ନା ଯାମିନୀ
ଭରା ଫାଲ୍‌ଗୁନ ମାସ,
କାନନ କୁଞ୍ଜେ କୁସୁମ ପୁଞ୍ଜେ
ଖେଳୁଛି ଶୁଭ୍ର ହାସ ।

ଘନ ଦୂର ବନ ଅନ୍ତରାଳୁଁ କେ
ଡାକୁଅଛି ରହି ରହି
ସୃଷ୍ଟିର କୋଟି ଛନ୍ଦରୁ ଏକ
ଆସୁଛି କି ସତେ ବହି ।

## ସାଙ୍ଗ-ସୁଖ

ମୁକୁଳଟି ଫୁଟି ଝରିପଡ଼େ ଯେବେ ବନରେ
ସେ ଦରଦ କିଆଁ ଲାଗଇ ମଳୟ-ମନରେ ?
କୋକିଳଟି ଯେବେ କାନନ ତିଆଗି ପଳାଏ
ଚଇତ କାହିଁକି ରାଇଜେ ତା ରଥ ଚଳାଏ ।

## ଶିଶୁର ଗାନ

ସ୍ରଷ୍ଟା ଆପଣା ସୁର ଫୁଟାଇଛି
ସୃଷ୍ଟିର ଯେତେ ରାଗେ
ମଉଳି ପଡ଼ିଛି ସେ ସକଳ ସୁର
ଦରୋଟି ରାଗିଣୀ ଆଗେ ।

## ଶୈଶବ-ସ୍ୱପ୍ନ

ବାଳୁତ ବେଳ ଧୂଳିର ଖେଳ
ସପନ ପରି ଉଭେଇ ଯାଏ
ଶୈଳ ପଦେ ସଲିଳ ଧାରା
ଉଜାଣି ଆଉ କେବେ କି ବହେ ?

ଜୀବନ ପଥେ ଯେତିକି ଚାଲୁଁ
ସେତିକି ଝୁରୁଁ ତାହାରି ଲାଗି
ବିଳାସମୟ ସପନ ଛବି
ସ୍ମୃତିରେ ସଦା ରହଇ ଲାଗି ।

## ମାତୃସ୍ମୃତି

ନୁହେଁ ସାଚି, ନୁହେଁ ମଧୁ, ଅବା ସୁଧାଧାର
ତଥାପି ହୁଏ ନା ଭୁଲି ମଧୁରତା ତାର,
କୋଟି କଣ୍ଠେ ବର୍ଣ୍ଣି ନୁହେଁ ଯା ମହିମାଗାନ
ସେହି ସ୍ମୃତି ମାନବର ବିଶ୍ୱେ ଗରୀୟାନ ।

## ପରସେବୀ

ମାନସେ ଆକାଂକ୍ଷା ଯାର
ନାହିଁ ଦିନେ ପରସେବା ବ୍ରତ
ସୁବିପୁଳ ଆୟୁ ଘେନି
ସେ ଜୀବନ ହେବ କି ମହତ ?
ପରଲାଗି ଦେହୁ ଯେହୁ
ବିନ୍ଦୁମିତ ରକ୍ତ କରେ ଦାନ
ସେହି ଆତ୍ମା ବିଶ୍ୱେ ଲଭେ
ଚିରକାଳ ଅମର ସମ୍ମାନ ।

## କ୍ଷୁଦ୍ରେ ବୃହତ୍

ଟୋପିଏ ଟୋପିଏ ବାରିକଣା ମିଳି
ରଚଇ ପ୍ରଳୟ ବୃଷ୍ଟି,
ଟିକିଏ ଅଗ୍ନି କରେ ଧ୍ୱଂସର
ତାଣ୍ଡବ ଲୀଳା ସୃଷ୍ଟି ।

ଟିକିଏ ଚାହାଣି ନେତ୍ରେ ଖେଳାଇ
ଚଳନ୍ତ ବିଜୁଳି ଠାଣି
ମହାନ୍ ଜୀବନ ମରୁମାୟା ପଥେ
ନିମିଷେ ନିଅଇ ଟାଣି ।

## ରୂପାୟିତା

ଦାମିନୀ ନ ବୁଝେ ଆପଣା କାନ୍ତି
ଆପଣା ଶୋଭାର ମୂଲ
ଗୋପନେ ଯେସନେ ସୁବାସ ଉଡାଡ଼ି
ଝରିପଡ଼େ ବନଫୁଲ ।

## ବଧୂ

ଧରା—ଗୃହେ କରେ ଯେହୁ ଅମୃତ ସଞ୍ଚାର,
ଦୟା କ୍ଷମା ବାତ୍ସଲ୍ୟର ମୂର୍ତ୍ତ ଅବତାର ।
ମର୍ତ୍ତେ ଏକାଧାରେ ଏହି ପ୍ରକୃତି କଲ୍ୟାଣୀ
ଅନ୍ନଦାତ୍ରୀ ଲକ୍ଷ୍ମୀ ଆଉ ଜ୍ଞାନଦାତ୍ରୀ ବାଣୀ ।



# ଭଲ ପାଅ ଯେବେ ମତେ

ପ୍ରଭୁ !

ଅନ୍ତର ଭରି ଭଲ ପାଅ ଯେବେ ମତେ
ଚାଲିବାକୁ ଦିଅ ବିପୁଳ ଶକ୍ତି
ସତ୍ୟର ରାଜପଥେ ।

ଛଡ଼ାଇ ନିଅ ମୋ ହିଂସା କପଟ
ଅହମିକା ଅଭିମାନ
ଚୂନା କରିଦିଅ ସ୍ୱାର୍ଥ କୋପର
ଦୁର୍ଗମ ସାନୁମାନ ।

ହରିନିଅ ମୋର ଅଳସ ବିଳାସ
କୋଟିଏ କୁବେର-ସୁଖ
ଗୋଟିଏ ଆତୁର— ଦରଦେ ଯେହ୍ନେ
ହେବି ମୁଁ ଅଶ୍ରୁ ମୁଖ ।

ନିଃସ୍ୱର ବ୍ୟଥା ଭୋଗିବି ଯେସନେ
ନିବିଡ଼େ ମରମଗତେ
ଦିଅ ସେହି ମନ ଆହେ ଭଗବାନ
ଭଲ ପାଅ ଯେବେ ମତେ ।

ଶୋଚନା ନାହିଁ ମୋ ସୁପାତି ବଦଳେ
ଦିଅ ଯେବେ ତୃଣ ଶେଯ
ଦୈନ୍ୟ ଭିତରେ ବଞ୍ଚେ ବା ଯେବେ
ଭୁଞ୍ଜି ମୁଁ ଶାଗ ପେଜ ।

ଦୁଃଖରେ ରହି ପୋଛି ମୁଁ ପାରିଲେ
ଦୁଃଖୀର ଲୁହଧାର
ସେହି ହେବ ତବ ଚରଣେ ମୋ ଗୁରୁ
ଗୌରବ ଉପହାର ।

ଚେତାଇ ଦିଅ ହେ ମହାଜନ-ପଥେ
ଚାଲିବାକୁ ଅବିରତେ
ଅନ୍ତର ଭରି ଅନ୍ତରଯାମୀ
ଭଲ ପାଅ ଯେବେ ମତେ ।

ପୋଥିର ସତ୍ୟ ସତ୍ୟରେ କରି
ଏ ଜୀବନେ ପରିଣତ
କର୍ମେ ବଚନେ ପୁରାଅ ଏ ମନେ
ସେହି ସୁମହାନ ବ୍ରତ ।

ସାହସ ଦିଅ ହେ ତ୍ୟାଗ-ସଂଗ୍ରାମେ
ରକତ ଦେବାକୁ ଦେହୁଁ
ବଞ୍ଚିତ ଯେବେ କରିନାହଁ ମତେ
ତୁମରି ଅସୀମ ସ୍ନେହୁଁ ।

ଅମୃତ-ଲେପ ବୋଳିବାକୁ ଦିଅ
ବିଶ୍ୱ-ବେଦନ କ୍ଷତେ
ସତେ ଯେବେ ପ୍ରଭୁ ! ଅନ୍ତର ଭରି
ଭଲ ପାଉଥାଅ ମତେ ।

ମୋହରି କଷଣ ଯେସନେ ମୁଁ ଶତ
ପୀଡ଼ିତ-ମରମେ ବୁଝେଁ
ସକଳର ସ୍ନେହ ସମ୍ମାନ ଲାଗି
ବୀର ବିକ୍ରମେ ଯୁଝେଁ ।

ଚିର ଅଭାଜନ ଅଧମରେ ଯେବେ
ଭଲ ପାଅ ପ୍ରାଣପ୍ରିୟ,
ରୋଗ ଜରା ଭୀତି ପାପ ତାପ କ୍ଲେଶୁଁ
ସମୂଳେ ମୁକ୍ତି ଦିଅ ।

ରଶନାରେ ଦିଅ ବିମଳ ସତ୍ୟ
ନୀରୋଗ ସ୍ୱାସ୍ଥ୍ୟ ମତେ
ଦୀନବାନ୍ଧବ ! ଏ ଦୀନକୁ ଯେବେ
ଭଲପାଅ ହୃଦଗତେ ।

ସେ ଦିନ ବୁଝିବି ତୁମର କରୁଣା
ମୋର ସିଦ୍ଧିର ଜୟ
ବିଶ୍ୱହିତେ ମୋ କ୍ଷୁଦ୍ର ଜୀବନ
ହୋଇଥିବ ଯେବେ କ୍ଷୟ ।

ଡାକୁଥିବ ମତେ ଆକାଶ ବତାସ
ଧରଣୀର ଧୂଳି ବାଲି
ସକଳ ହୃଦୟେ ଏ ମୋର ହୃଦୟ
ମିଶାଇ ଦେବାକୁ ଖାଲି ।

ଛନ୍ଦ ନା ମତେ ଜପ ତପ ଯାଗ
ପୂଜା ପୋଥି ଭାଗବତେ,
ହେ ନାଥ ! ଯେବେଟି ଅନ୍ତର ଭରି
ଭଲ ପାଅ ତୁମେ ମତେ ।

□□

# ମନ-ମନ୍ଦିର

ମନ୍ଦିରେ କିବା ପ୍ରୟୋଜନ ବୃଥା ଗମନେ
ସ୍ୱାର୍ଥଲିପ୍ତ ଚନ୍ଦନ ଧୂପ ସୁମନେ ?

ଭ୍ରାନ୍ତି ନୁହେଁ କି ସଲିଳ ଅର୍ଘ୍ୟ ଆରତି
ବାଦ୍ୟ ପ୍ରଦୀପେ ପୂଜିବା ପାଷାଣ- ମୂରତି ?

ଖୋଲିଦେଏ ମନ ! ହୃଦୟ-ଦେଉଳ ଦୁଆର
ଅନ୍ତରଯାମୀ- ପଦତଳେ ହୁଅ ଜୁଆର ।

ସମ୍ମୁଖେ ଏ ତୋ ଦେବତା ହେଲେଣି ଉଦୟ
ଅଶ୍ରୁ-ପନିର ଢାଳିଦେ ନିଗାଡ଼ି ହୃଦୟ ।

ଭକତି-ପୁଷ୍ପ ପ୍ରେମ-ଚନ୍ଦନେ ବୁଡ଼ାଇ
ଦେଏରେ ତୋହର ଦେବତା ବକ୍ଷ ଜଡ଼ାଇ ।

କୁହୁଳାଇ ଦେଏ ଦୀର୍ଘ ଶ୍ୱାସ ଧୂପରେ
ଦେଖିବୁ ଯେବେ ତୁ ବାସ୍ତବ ଦେବ- ରୂପରେ ।

ଜଳାରେ ବେଦନ- ସଳିତା ଯୁକ୍ତ ପ୍ରଦୀପ
ଦୀନ-ବାନ୍ଧବ ବିରାଜିଲେଣି ତୋ ସମୀପ ।

ଶୋକ-ସନ୍ତାପ- ସ୍ତୁତିମୟ ଯେଉଁ ଜୀବନ
କେଉଁଠୁ ତୋ ଆଗ ଶୁଣିବେ ପତିତ- ପାବନ ?

ସକଳ କଳୁଷ ଦୁଃଖ ଯାତନା ବିସୋରି
ପ୍ରେମ ସୁନ୍ଦରେ ନେଏ ପ୍ରୀତିକର ପ୍ରସାରି ।

ପ୍ରାଣ-ମନ୍ଦିରେ ଖୋଲି ତୋ ରୁଦ୍ଧ ଦୁଆର
ଅନ୍ତରଯାମୀ- ପଦତଳେ ହୁଅ ଜୁହାର ।

□ □

# ଶିଶୁ

ହେ ଶିଶୁ ସୁନ୍ଦର !
ଜନନୀର ବିନ୍ଦୁ ବିନ୍ଦୁ ରକ୍ତ ରୂପାନ୍ତର

ଦେଖିଛି ମୁଁ ତତେ—
ଅବସାନ-ଫାଲ୍‌ଗୁନର
ପ୍ରଥମ ପ୍ରଭାତେ,
ମୃଦୁବାତ-ବିଧୂନିତ
ନବୋଭିନ୍ନ ଆରମ୍ୟ ଚଳଦଳେ ।
ତରୁଣୀର ଯଉବନ-ରଙ୍ଗଭୂମିପରେ
ପ୍ରଣୟର ମଙ୍ଗଳା ଚରଣେ
ମଧୁ ଅଭିନୟର ତୁ ଜୀବନ୍ତ ଆଲେଖ୍ୟ ।

ଦରହାସ ତୋର
ନିତ୍ୟ ଦେଖା ରସହୀନ ବସ୍ତୁ
ସୁଦକ୍ଷ ରୂପଶିଳ୍ପୀର କଳ୍ପନା-କୁହୁକେ
ଅନବଦ୍ୟ ଚାରୁ ଛବି ପାଲଟିଲା ପରି ।

ଚପଳ ମାନସ—
ପ୍ଲାବନ-କଳୁଷ-ମୁକ୍ତ
କଳଗୀରା ମୃଦୁ-ବୀଚି-ଯୁକ୍ତ
ଶରତର ସ୍ୱଚ୍ଛ-ଧାର ସରି ।

ସୁମିଷ୍ଟ ଛଞ୍ଚାଳ—
କ୍ଷଣିକ କଳହେ ଯଥା ଅଭିନବ ଦାମ୍ପତ୍ୟ ପ୍ରଣୟ ।
ରେ ଅବୋଧ ଶିଶୁ !
ବାରବାର ଏକ ରୂପେ
ମଣ୍ଡି ଏଇ ମର୍ତ୍ତ୍ୟ ମାଟି-ଅଙ୍କ
ଦେଖୁଛୁ ବିସ୍ମିତ ନେତ୍ରେ
ବିଶ୍ୱର ଏ ଚିରନ୍ତନ ଲୀଳା—

ବିଦଗ୍ଧ ପାଠକ ଯଥା
ନବ ନବ ଭଙ୍ଗୀ ପ୍ରକଟିତ
ଏକଇ କଳ୍ପନା ବେଶେ
ହୋଇଥାଏ ଚକିତ ବିମୁଗ୍ଧ ।

କ୍ଷୁଦ୍ର ଏଇ ସ୍ମିତ ମୁଖେ
ଲେପିଲା ରେ କିଏ
ଉଲ୍ଲାସର ମୂର୍ତ୍ତ ଅଭିରୁଚି ?
କଣ୍ଠେ ପୁଣି ଦେଲା ଢାଳି
ଚିରଚୋରା ଅମୃତ ମୂର୍ଚ୍ଛନା !

କ୍ଷୁଦ୍ର ବୁଦ୍ଧି ତୋର
ଆକର୍ଷଇ କହ କେଉଁ ମାୟାର ଚୁମ୍ବକେ
ନିଖିଳର ମାନସ-ଅୟସ ?

ନିର୍ମୋହ ନିଷ୍ପାପ ତୋର କୋମଳ ପରାଣେ
ଫୁଟି ଉଠେ ଜୀବନର ପ୍ରଚ୍ଛନ୍ନ ବିକାଶ
ପ୍ରଥମ ବାସନ୍ତୀ ଲଗ୍ନେ
ସୁରଭିତ ଗୋଲାପ-କୋରକେ
ଚହଲି ଉଠଇ ଯଥା
ସ୍ଫୁଟନର କ୍ରମ ଉନ୍ମାଦନ ।

ରେ ସରଳ ଶିଶୁ !
ତୋ ପାଇଁ ରହିଛି ପଡ଼ି ଜୀବନର ଅନନ୍ତ ଅୟନ
ସେହି ପଥ ଧାରେ
ଚଳୁଁ ଚଳୁଁ ଦେଖିବୁ ରେ କେତେ
ଶରତର ଚାରୁ ସ୍ନିଗ୍ଧ
ଶ୍ୟାମ କ୍ଷେତ୍ର ବୀଥି
ବସନ୍ତର ଆମୋଦିତ
ପୁଷ୍ପିତ ବନାନୀ ।

ଶୁଣିବୁ ରେ କାହିଁ
ଝରଣାର ଉଦ୍‌ବେଳ ଝଙ୍କାର
କୋକିଳର କଳମୁଖରତା
ମଧୁପର ଅଳସ ଗୁଞ୍ଜନ ।

ଶାରଦୀ ଚାନ୍ଦିନୀ ସାଥେ
କରୁଁ କରୁଁ ଗୋପନ ଆଳାପ
ସୌରଭ ବିହ୍ୱଳା ନିଶା ଧୀରେ ଯିବ ପାହି ।
ସୁଶୀତଳ ମଳୟର
ସୁଲଳିତ ମର୍ମର ନିସ୍ୱନେ
ମିଳାଇ ଆପଣା କଣ୍ଠ
ଗାଇବୁ ରେ ଅମର ସଙ୍ଗୀତ ।
ଆଉ ବା ଦେଖିବୁ କାହିଁ
ଝଟିକାର ବିକଟ ମୂରତି,
ବୈଶାଖୀର ଆଗ୍ନେୟ ତାଣ୍ଡବ ।

ପ୍ରାବୃଟରେ ତରୁଣ ଯୌବନେ
ଖର-ପ୍ଲାବୀ କୂଳକଂଷା ତଟିନୀ-ହୃଦୟେ
ବୟସର ଧର୍ମମଦେ
ଉର୍ମିମୟ ଉଦ୍ଦାମ ଉଲ୍ଲାସ ।

ଶ୍ରବଣେ ବାଜିବ ତୋର
କେବେ ନିକାଞ୍ଚନେ
ଶାବକ ଶିଶୁଟି ପାଶେ
ଅସମ୍ଭାଳ କଣ୍ଠେ
ସାଥୀହରା କପୋତୀର
ବୁକୁଭେଦୀ ଆକୁଳ ବାହୁନା ।

ପୁଣି କେବେ ଉଆଁସୀର
ସୂଚୀ-ଭେଦ୍ୟ ନିଘନ ତିମିରେ
ନିଜକୁ ଆଚ୍ଛାଦି ଧରା
ଅଛି ମଗ୍ନା ବିଚିତ୍ର ରହସ୍ୟେ ।

ଏଇ ଦେବ-ଶିଶୁ ଭାବ
ଆଜୀବନ ପୋଷିଲେ ତୁ ପ୍ରାଣେ
ଗନ୍ତବ୍ୟ ଅୟନେ
କୋଟି ବିଘ୍ନ ଅତିକ୍ରମି
ତାମସୀର ଯବନିକା ପାରେ
ପାଇବୁ ରେ ଜ୍ୟୋତିର୍ମୟ ଆଲୋକ ସନ୍ଧାନ ।

ହେ ଆଜିର ଶିଶୁ !
ସଞ୍ଚିତ ରହିଛି ତୋର ମାନସ-ଆକରେ
କଳାବିତ୍ ମନସ୍ୱୀର ବିଚିତ୍ର କରଣୀ
ଦିଗ୍‌ବିଜୟୀ ସୈନିକର ଶୌର୍ଯ୍ୟ-ଅଭିଯାନ
ସୂକ୍ଷ୍ମ ବୁଦ୍ଧି ସ୍ଥପତିର ଅଦ୍ଭୁତ ମନୀଷା
ସତ୍ୟସନ୍ଧ ମହାତ୍ମାର
ବିଶ୍ୱବନ୍ଦୀ ମହୋଦାର
ଦେଶ ପ୍ରେମିକତା ।

ବିରାଟ ଧରଣୀ-ବକ୍ଷେ
ନିରଳସ କୃପାଣ ସମାନ
କର୍ତ୍ତବ୍ୟ-ସଂଗ୍ରାମେ ସଦା ନ ରହିଲେ ରତ
ଆଶାର ସପନ ତାର
ସ୍ତବକିତ ହେମଶସ୍ୟ ପୁଞ୍ଜେ
ହସଇ କି ସ୍ୱପ୍ନ ସମ
କେଦାରିକା ମାନେ !

ରେ ଶିଶୁ !
ନିମ୍ନମୁଖୀ ସ୍ରୋତ ସମ ଭାଳୁ ଯେବେ
ଜୀବନର ଧର୍ମ
ଜନମ ଅର୍ଥଟି ତୋର ମୃତ୍ୟୁ ସଙ୍ଗେ ହେବ ସିନ ସମ ।



## ପୁଷ୍ପେ କୀଟ

ଫୁଲର ଜନମ-ତିଥି
ପଡ଼ିଅଛି ପହିଲି ଫାଲ୍‌ଗୁନେ
ଅସ୍ତଗତ ନିଶୀଥର
ମାହେନ୍ଦ୍ର ଲଗେନ ।
ବାଜଇ ପତତ୍ରୀ-କଣ୍ଠେ
ଘନ ଘନ
ଶୁଭଶଙ୍ଖ ସ୍ୱନ ।

ତରୁଣ ଜ୍ୟୋତିଷ-ସୂର୍ଯ୍ୟ
ଛିନ୍ନ-ସାଦା-ମେଘ-ତାଳପତ୍ରେ
ରଶ୍ମି-ମୁନେ ରଚଇ ଜାତକ
ଅମୃତ ଏ ବେଳା—
ସୁଷମା-ସୌରଭ ଗୁଣେ
ହେବ ପୁଷ୍ପ ଯୋଗ୍ୟ

ନିଖିଳର ପ୍ରିୟପାତ୍ର
ଅର୍ଚ୍ଚନାର ଅର୍ଘ୍ୟ ।

ନାହିଁ ଝଡ଼ ରିଷ୍ଟ—
କୀଟ ଦଂଶନର ଘାଟି
ଗ୍ରୀଷ୍ମ-ଶନି-ଗ୍ରହ ଯିବ
ବରଷାରେ କଟି,
ହସେ ଲତା ମାତୃତ୍ୱର ପରମ ଗୌରବେ
ବନ-ନିକାଞ୍ଚନେ
ଦୋହଲି ଦୋହଲି ମନ୍ଦ
ବସନ୍ତ ପର୍ବନେ ।

ଜନ୍ମଦିନ ଶୁଭ ନିମନ୍ତ୍ରଣ
ପଠାଗଲା ମଳୟର ମୁଖେ
ବନ୍ନୁଁ ବନାନ୍ତରେ
ମଧୁଚକ୍ର-କୁଟୀରେ କୁଟୀରେ ।

ଝରା ବକୁଳିତ ପଥେ ଗମି
ମକରନ୍ଦ-ମଉଛବେ ମର ଭୃଙ୍ଗଦଳ ।
ମଞ୍ଜୁରିତ ଆମ୍ରକୁଞ୍ଜ ଚନ୍ଦ୍ରାତପ ତଳେ
ବଲ୍ଲରୀ-ମଣ୍ଡପେ ହେଲା ଋତୁ-ଷଠିପୂଜା
ପିକ-ହୁଳହୁଳି-ବାଦ୍ୟେ
ନବ ଦୂର୍ବାଦଳେ ।

ଭୋଜି ଅନ୍ତେ ଶିଶୁ ପୁଷ୍ପେ କରି ଆଶୀର୍ବାଦ
ଆପଣା ଆପଣା ପଥେ ଯେ ଯାହାର ଚଳାଇଲେ ପାଦ ।

ଆଶ୍ଚର୍ଯ୍ୟ
"କୁସୁମେ କୀଟ"
ଚିହ୍ନିଲା ଲତା—
ଶିଶିର-ଲୋଟକେ ସିକ୍ତ ପତ୍ର-ଆଖିପତା ।
ଛାତିରେ ବାଜିଲା ଶତ ବଜ୍ରର ପାହାର
ହରାଇ କୋଳର ଶିଶୁ କି ବ୍ୟଥା ମାଆର !

ହାୟ-ହାୟ-ହାୟ,
ଅଶାନ୍ତ ବଲ୍ଲରୀ ମନ ପୂର୍ଣ୍ଣିମାର ସିନ୍ଧୁବକ୍ଷ ପ୍ରାୟ
କଅଁଳ ଦରୋଟି କଣ୍ଠେ 'ମାଆ' 'ମାଆ' ଡାକି
ଶେଷଥର ପାଇଁ ଫୁଲ ବୁଜି ନେଲା ଆଖି ।

ପାଖୁଡ଼ା ବଞ୍ଚିଛି—ରେଣୁ ପଡ଼ିଅଛି ଝରି
ମଧୁ ଲୁଟି ସୁବାସ କେ ନେଇଅଛି ହରି ।
କି ଅର୍ଥ ରହିଲା—
ଫୁଲର ଜୀବନେ ଆଉ...
ବୃନ୍ତ ବାହୁନିଲା—
ମନେ ମନେ
ନିଶବଦ ନିଶୀଥର ଗଭୀର ନିର୍ଜନେ ।

□ □

## ବିସ୍ମୟ

''ଏ କ'ଣ ?
ଝଡ଼ର ତ ଭାରି ଆଜି ଗର୍ଜ୍ଜନ...''
କହିଲା ନାଥିଆ
''ଗତକାଲି ରାତିଠଉଁ
କଷା ପଡ଼ି ନାଇଁ ଟିକେ ଆଖି ଦିଇଟାରେ
ନିମୁନିଆ ଜରେ ବାପ ଲାଗି କତରାରେ
ବାଉଳି ହେଉଛି ଖାଲି
'ପାଖେ ବ'ଅ ନାଥ !''

ଶୁଣୁଚ ନା' ସାଆନ୍ତାଣୀ
ଘରେ ଏଣେ ନାହିଁ ପୁଣି ଭାତ ।
ବଇଦ ଘରକୁ ନିତି ପାଣିବାଟ କରି
କେନ୍ଦରା ମୋ' ମାରିଲାଣି ପାଦ
ବରଷା ସାଥେ ଦର୍ଜ୍ଜା ଚାରିଦିନ ହେଲା
ନାଗିଚି ଏ ବତାସର ସଉତୁଣୀ ବାଦ ।

ଚେମାବୋଉ ବାପଘରୁ ଦେଇଚି ବାତିନି
ଆସିବ କିମିତି ଝଡ଼େ
କାଖେ କଟି ଛୁଆଟିକୁ ଘିନି ।
ବୁଢ୍ଢୀମାଆ ହେଉଚି ଯା' ଧନ୍ଦି
ଆହୁରି ହିନସ୍ତା ହଲେ ବଳଦ ମୁଁ ଛନ୍ଦି !

ମୁହଁରେ ନାକଟି ଖାଲି ହେଇଚି ଯା' ଠିଆ
ପୂରିଲା ପ୍ରଚୁକା ଗାଲ—କାଲିର ନାଥିଆ
ଭେଣ୍ଡିଆ ଉମରେ
ଚିନ୍ତା ଜରେ ଜରେ
ହଲିଲାଣି ହାଡ଼ ଘେନି ସତେ କିବା ବୁଢ଼ା,
ତଥାପି ଡାକୁଛି ବିଲ ଦୀପିଦାଣ୍ଡି ହୁଡ଼ା
ହାଡ଼ ମାଂସ କରି ପିଷ୍ଟ
ଖାଲି ଅବଶିଷ୍ଟ
ଝୋଲାମରା ଜୀବନ ତା' ନେବାକୁ ଘୋଷାରି ।
''କୁଆଡ଼ିକି ଅଣ୍ଟୁ ନାହିଁ କାନି ଯେତେ ଓଟାରି ଓସାରି ।
ପ୍ରବାଦ କହୁଚି ପରା ଘରେ ଥିବ ଗାଈ
ଆଉ ସଙ୍ଗେ ଥିବ ଭାଇ
ଏକୁଟିଆ ହୋଇ ଭଲା କରିହୁଏ କିସ ?
ପ୍ରଭୁ ଜଗଦୀଶ
ହୋଇ ମୋ' ଭରସା
ଖଣ୍ଡିବେ ଏ ଗରିବର ଦଶା ।''

''ମଣିଷ ପାଞ୍ଚରେ କେବେ ସିଝଇ କି ଶାଗ ?

ହେଇ
ନବୁଟିରେ ଆଗ
ଆଉଟିବୁ ସାବୁଦାନା''
''ସେ ପୁଡ଼ାରେ ?''
''ଚିନି ।''—
ସବୁତକ ଘିନି
ଅଣନିଶ୍ୱାସୀ ହୋଇ ଧାଇଁଲା ନାଥିଆ

ଖାଡ଼ା ଖାଡ଼ା ଚାରିଓଳି ଭୋକ ଉପାସିଆ
ଦଡ଼ି ଲଟପଟ ବାଟ—ବେଳ ରତରତ
ଭାଙ୍ଗି କି ପଡ଼ିଲା ଉର୍ଦ୍ଧ୍ୱେ ଏତେବେଳେ ବିଶାଳ ପର୍ବତ ।
କାଳରଡ଼ି ? ? ?
ନା—
ନା—
ଚଡ଼ଚଡ଼ି...
''କେତେବେଳେ ଭଲା ମୋର ଫେରିବ ନାଥିଆ
ଢିଙ୍କିର ପାହାର ପରି ଦୁମୁକଇ ହିଆ
ଫରକୁଚି କିଆଁ ଆଜି ନିଆଁଲଗା ଆଖି ?''

'ନାଥ' 'ନାଥ' ଡାକି
ତରାଟି ଦେଇଛି ଡୋଳା ବୁଢ଼ା ସେହି ନାଦେ
ବକ୍ରର ଦିମାକ ଦେଖି
କହି କହି ''ହେଲା ଏ କି ?''
ତାଟଙ୍ଗା ତଟିନୀ ଆଉ ନ ଚଳଇ ପାଦେ ।

''ପାରିଥିବ ପହଞ୍ଚି ନା—
ଧରିବଣି ନାଥିଆ ତା' ଘର ?''
ବଡ଼ ହରବର
ହେଲାଣି ବିଚରା ଏଇ ମାସ କେଇଟାରେ
ପୁରଜନ ପାଇଁ ଏଣେ ଭାତ ବାଢ଼ିବାରେ
ପତ୍ନୀ ବ୍ୟସ୍ତମନା
''ଶୁଭୁଚିଟି କୁନ୍ତୀବୋଉ,
ବେଗେ ଆଣୁଚ ନା
ଦି'ଖଣ୍ଡ ବଘରା ଲଙ୍କା ଡାଲିରୁ ଉଙ୍କାଏ
ହାଟରେ ହରଡ଼ ସେର ଏ ପାଳି ଟଙ୍କାଏ
ନ କରିବ କାଲିଠଉଁ ବେଶୀ ବହଳିଆ ।''

କହୁଁ କହୁଁ ପହୁଞ୍ଚିଲେ ଗୃହସ୍ଥ ଏକାଳେ
ପଲଙ୍କରେ ଧଳା ଶେଯ ପାରି କଅଁଳିଆ ।

ପଡ଼ିଲା କବାଟ କଣ୍ଡା, ନିଭିଲା ଆଲୁଅ
ଫିଟିଲା ଅଣନିଶ୍ୱାସୀ ପବନର ସୁଅ ।

ବାହାରେ ଝିଲ୍ଲୀ ବାହୁନା, ପୁରେ ପୁରେ ସ୍ତବ୍ଧ ନୀରବତା
ନୋହିଲା ତ ମନ୍ଥି କାର ଛାତି ଏ ରାତିରେ
ନ ଭାବିଲା କେହି ଟିକେ 'ନାଥିଆ'ର କଥା ।

ପାରିଥିବ ପହଞ୍ଚିନା 'ନାଥିଆ' ତା ଘରେ
ସେହି ପ୍ରତିଧ୍ୱନି ଉଠେ କୋଶ ଦୁଇ ବ୍ୟବଧାନେ
ଦୁଃଖଶୋକ-ଉଜାଗରା ଜନନୀ-ଅନ୍ତରେ ।

"କଅଣ କହୁଚୁ ଆରେ କି କାଳ ଖବର"
ମୁଣ୍ଡେ କି ପଡ଼ିଲା ଭାଙ୍ଗି ସହସ୍ର ବଜର,
"ଗଲାକାଲି ମୁହଁସଞ୍ଜ ଘଡ଼ି
ମାରିଥିଲା ବେଣାପାଟେ ଯେଉଁ ଚଡ଼ଚଡ଼ି...
ହେଇ ତା ଗାମୁଛା ପୁଡ଼ା ଦେଖୁନୁ ଦେଠେଇ,
ସେ ଗଣ୍ଠିରେ ସାବୁ ଚିନି—ଏଥିରେ ଦବେଇ..."
"କୁଆଡ଼େ ଗଲା ମୋ ଧନ"
ଭୂଇଁକୁ କାମୁଡ଼ି
ଆଖି ପିଛାଳାକେ ଚାହୁଁ ଶେଷ ହେଲା ବୁଢ଼ୀ,
କେତେ ଯେ ବତାସ ଝଡ଼ ଜୀବନେ 'ନାଥିଆ'
ପାରେଇ ଦେଇନି ବାଟେ ଫେରି ଏକାଟିଆ
କେତେ ବିଦ୍ୟୁ ଘଡ଼ଘଡ଼ି ମଥାପରେ କ୍ଷେତ ବେଉଷଣେ
କଟିଯାଇ ନାହିଁ ଘୋର ଆଷାଢ଼ ଶ୍ରାବଣେ
ଅବିଚାରୀ ବିଧିର କି ଅନ୍ଧ ବୁଝାମଣା
ନୂଆ କଷି ଫଳଲଦା ଗଜା ଏ ଗଛଟି
ଦୈବର କୁରାଢ଼ି-ଚୋଟେ ହେଲା ହାୟ ହଣା !
ଦେଶର ସମ୍ବାଦପତ୍ରେ ଏ ଶୋକ-ବାରତା
ପ୍ରଚାରିତ ହୋଇ ସିକ୍ତ କଲା ତରେ ନାହିଁ
କାର ନେତ୍ରପତା ।

ଦିନ ପରେ ଗଲା ଦିନ ତାର ବାଟେ ବାଟେ
ସ୍ମୃତିର ସମାଧି କେହି ନିରମିଲା ନାହିଁ
ଗରିବ 'ନାଥିଆ' ପାଇଁ ଗାଆଁ ବେଣାପାଟେ ।

ବିଶ୍ୱର ଏ ମହାଶ୍ଚର୍ଯ୍ୟ ଅତି
ଏଡ଼ାଇ ପ୍ରତି ମୁହୂର୍ତ୍ତେ ଜୀବନର ପ୍ରତିକୂଳ ଗତି
ବିଘ୍ନ ଧକ୍‌କା ଦୁର୍ଦ୍ଦୈବର ଦାଉ
ବଞ୍ଚୁଛି କେସନେ ପ୍ରାଣୀ ଘେନି ପରମାୟୁ ।



## ତୁଳନା

କିଏ ସୁଖୀ ?
ସରଗର ଉର୍ବଶୀ
ନା
ମର୍ତ୍ତ୍ୟର ମାନୁଷୀ ।

ସ୍ୱର୍ଗ ଚିର ବିଳାସର
ସ୍ୱର୍ଣ୍ଣ ରାଜଧାନୀ
ଧରା ସୁଖ ଦୁଃଖମୟ
ମାଟି ହୀନିମାନୀ ।
ଯହିଁ ନାହିଁ ଅଶ୍ରୁ ତହିଁ
ହାସ୍ୟର କି ମୂଲ
ମୃତ୍ୟୁ ନାହିଁ ଯହିଁ—
ଜୀବନର ସ୍ୱାଦ ସେଥି
ସ୍ୱପ୍ନ ବିଲକୁଲ ।
ମୁକ୍ତିର ମର୍ଯ୍ୟାଦା ପକ୍ଷୀ
ଅନୁଭବେ ଭଲେ
ତ୍ୟାଗ ତାରେ କଲେ ରୁଦ୍ଧ
ପିଞ୍ଜରାର ଶୃଙ୍ଖଳି ।
ମିଳନର ସୁଖ କାହିଁ
ଲାଗଇ ମଧୁର
ବିରହ-ଅନଳେ ପ୍ରାଣ
ନ ହେଲେ ସନ୍ତୁଳି ?

ଏ ଧରଣୀ ତଳେ ସଦା
ଛୋଟ ସୁଖ ଦୁଃଖ
ଅଶ୍ରୁ ହାସ୍ୟ ଉଭୟର
ଚାଲିଅଛି ନୀରବ କୌତୁକ ।
ଚିର ଯହିଁ ଘନ ଅମା
ତିମିର ରାଜତ୍ୱ
ତହିଁ ସିନା ଯାଏ ବୁଝା
ଚନ୍ଦ୍ରର ମହତ୍ତ୍ୱ ।

ଶୀତବନେ ରମ୍ୟ ସିନା
ବସନ୍ତ ପ୍ରବେଶ
ଉର୍ବଶୀ ପାରିବ କହି
କାହୁଁ ଆମ ଦେଶ ।

ଇନ୍ଦ୍ରାଣୀ ପଦବୀ ତେଜି
ତେଜି ପ୍ରିୟ ଅଳକା ବିଭବ ।
ଭାବୁଥିବ ସରଗ ଅପ୍‌ସରା
ଦୀନହୀନ କୃଷାଣ କୁଟୀରେ
ଅରୂପସୀ ନବବଧୂ ବେଶେ
ଆସିବାକୁ ମାଟିର ଏ ଧରା ।



# ଦୂବ ଓ ଦେବଦାରୁ

ଦେବଦାରୁ ଦିନେ ଦୂବକୁ କହିଲା –
"ଆକାଶ ଉଚ୍ଚା ତ ମୁହଁ
ବିକଳ ଲାଗଇ ମୋର ଗୋଡ଼ତଳେ
ପଡ଼ିଥାଉ ବୋଲି ତୁଉ ।

ନିତ୍ତୋରିଆ ଦେଖି ତୋ ଉପରେ ସିନା
ଚାଲନ୍ତି ସଭିଏ ଦଳି

ନ ଦେଖେଁ ମୁଁ କାହିଁ ଇମିତି ନିରୀହ
ଜଗତେ ଏକା ତୋ ଭଳି ।

ଜିଆନାଡ଼ ଦିହେ ତାକତ ଆଣିବା
କମର କଷିବୁ କାହୁଁ
ମୋହରି ପରିକା ନାହିଁ ତ ତୋହର
ଶକତିଆ ଶହେ ବାହୁ ।

ଦିହ ତୋର ଭଲା ନକନକ ହେଲା
ମହଁରେ ବି ତୋଡ଼ ନାହିଁ
ଧିକ ତୋ ଜୀବନ କେଡ଼େ ହୀନିମାନ
ଖୋଜିଲେ ନ ଥିବ କାହିଁ ।

ଦୁନିଆ ଖବର ରଖୁଅଛି ସିନା
ତିଖରେ ଥିବାରୁ ମୁହିଁ
ତୁଉ ଖାଲି ସେହି ମାଟିକୁ ଜାଣିବୁ
ତତେ ଜାଣିଅଛି ଭୂଇଁ ।

ସବୁରି ଉପରେ କଥା ମୁଁ କହୁଛି
ସବୁରି ତଳେ ତ ତୁଉ
ଦୟା ଲାଗେ ସତେ ତୋଓରି କଥାଟି
ଭାବେଁ ଯେତେବେଳେ ମୁଉଁ ।''

''ଜଗତେ କାହାର ସମବେଦନା ମୁଁ
ଶୁଣିବାକୁ ନାହିଁ ଚାହେଁ''
ବଖାଣିଲା ତୂବ ''ମୋର ସୁଖ ଦୁଃଖେ
ମୁହିଁ ମୋର ପଡ଼ିଥାଏଁ ।

ସହଜେ ନିବଳ ନାହିଁ ମୋ ଈରିଷା
କପଟ କି କଉଶଳ
ଲଢି କାହା ସାଥେ ମରିବାକୁ ଆପେ
ମାଗେ ନାହିଁ ତୋଠୁ ବଳ ।

ତୋହରି ବଢ଼େଇ ତତେ ମାରିଦିଏ
ବଜରକୁ ଟାଣି ପାଶେ
ଟିକିଏ ସୁଲୁକା ପବନ ଅଇଲେ
ଲୁଚି ପଡ଼େ ମୁହିଁ ଘାସେ ।

ଜୀବଟିକୁ ତୋ ରଖିଛୁ ବାନ୍ଧି ରେ
ସାରୁ ପତରରେ ଭାଇ,
ମନକୁ ମୋହର ସେ ଭାବନା ହେଲେ
ଟିକିଏ ତ ଛୁଏଁ ନାହିଁ ।

ଝଡ଼ ଦିଏ ତତେ ମରଣ-ଧମକ
ଜୁହାର କରି ମୋ ପାଦେ
ତିଳେ ବିଚଳିତ ନୁହେଁ ମୋ କଲିଜା
ଘୋର ଘଡ଼ଘଡ଼ି ନାଦେ ।

ଧୂଳିରୁ ମୁଁ ଉଠି ଯେବେଳେ ଦେଉଳ
ଦେବତା ଆଗରେ ବସେଁ
ଛୋଟ ଏ ଜନମ ଲଭିଛି ବୋଲି ମୁଁ
ବଡ଼ ଗଉରବେ ହସେଁ ।

ମଙ୍ଗଳ କଳସେ ଯେତେବେଳେ ପଶେଁ
ଛାତି ଥରେ କନକନ
ଗୁଣୀଠାରୁ ମାନ ମହତ ପାଇଲେ
ଭାରି ଖୁସି ଲାଗେ ମନ ।

ଛୋଟ ସିନା ମତେ ମଣୁଛୁ, ମୋ ଯୋଗେ
ହୁଏ ବଡ଼ ବଡ଼ କାମ
ତୋ ପତରେ ରୋଗ ବୋଲ ନ ମାନିଲେ
ଡାକରା ପଡ଼େ ମୋ ନାମ ।

ଯେଉଁ ବଢ଼ତିରେ ବିନାଶ କେବଳ
ଲୋଡ଼ା ନାହିଁ ମୋର ତାହା
ପରହିତେ ଯେହୁ ପରାଣ ପାତଇ
ମୁକୁଳେ ମୁକତି-ରାହା ।

ଛୋଟ ବଡ଼ ଘେନି ଗଢ଼ା ଏ ଦୁନିଆ
କାରେ ନ ମଣିବ ସାନ
ବଡ଼ ଠାରୁ ଛୋଟେ ରହିଥାଏ ବେଶୀ
ଲୁଚି ସଦ୍‌ଗୁଣ ମାନ ।"

ଛୋଟ ଦୂବଟିର ଉପହାସ ଶୁଣି
ମହାମେରୁ ଦେବଦାରୁ
ବଣସାରୁ-ନାଡ଼ ଚୋବେଇଲା ପରି
ମୁହଁ କଲା ଗାରୁଗାରୁ ।



## ଜହ୍ନମାମୁଁ

କି ଅମୂଲ୍ୟ ନିଧି ମିଳେ ତୋ' ନାମୁଁ
ସାରା ଦୁନିଆର ରେ ଜହ୍ନମାମୁଁ !

କହ ଜହ୍ନମାମୁଁ, କାହିଁ ତୁ ଥାଉ
ଉଆଁସ ଡେଇଁଲେ ଡେରେଛି ଚାହୁଁ ।

ଚିକିଚିକି ଚୋରା ତୋ' ସୁନାହସ
କାଠୁଆ ମନରେ ଝରାଏ ରସ ।

ସେ ମଧୁର ପଣା ପିଇବା ପାଇଁ
କି ଆଶାରେ ମାଟି ନ ଥାଏ ଚାହିଁ ।

ଚାହିଁ ଦରପଣ ତୋ ଚେକାମୁହେଁ
ନଈ ପରି ହୃଦ ଅଥିର ହୁଏ ।

ବାଲୁତ ବେଳେ ରେ ବାଲୁତ ବେଳେ
ମାତିଥିଲି ଯେବେ ମୁଁ ଧୂଳି ଖେଳେ ।

ଦାଣ୍ଡ ପିଣ୍ଡାଟିରେ କାନିଟି ପାରି
ସେଦିନ ତୋ ଆଡ଼େ ଆଙ୍ଗୁଳି ଠାରି

ଡାକୁଥିଲା ବୋଉ ଦୁଆରେ ବସି
"ଆ ଜହ୍ନମାମୁଁ ସରଗଶଶୀ ।"

ଆଜି ବି ତ ମୁହିଁ ଦେଖିଛି ତତେ
ଊଣା କରିଅଛୁ ସେ ସୁଖୁଁ ମତେ ।

କାହିଁ ଗଲା ମୋର ମିଠା ବୟସ
ଅଲିଅଳ ଖେଳ ମିଠା ଅୟସ ।

ସେ ମିଠା ଆନନ୍ଦେ ଜଞ୍ଜାଳ ଖଟା
କଲାଣି ଏ ପ୍ରାଣ କି ହଟହଟା ।

ଶିଶୁଟିଏ ଭଳି ଆକାଶେ ବୁଲୁ
କେବେ ବା ବଉଦ-କୋଡ଼ରେ ଝୁଲୁ ।

କାହିଁରେ ଗଢ଼ିଲା କିଏ ତୋ ଦେହ
ଠୁଳ କରି ତିନି ମୁଲକ ସ୍ନେହ ।

ଲହୁଣୀ ପିଣ୍ଡୁଳାଟିଏ କି ସତେ
ସୁନାଥାଳି ପରି ହେଉ ପରତେ ।

ପାଖେଇ ଅଇଲେ ଅଶିଣ ମାସ
ଆକାଶେ କରୁ ତୁ ରୁପେଲି ରାସ ।

ତତେ ଦେଖି ହସେ ବଣର ଫୁଲ
ଦରିଆ ଲହଡ଼ି ହୁଏ ଆକୁଳ ।

ମାଆ ପାଖେ ହସେ କଅଁଳା ଝିଅ
କୁଆଁରୀ କଇଁ ଯେ ଫୁଟଇ ନୂଆ ।

ଓଉଫୁଲ ପରି ତୋ ଧୋବ ହସେ
ରଙ୍କୁଣୀ ଚକୋଇ ସବୁଠୁଁ ରସେ ।

ଏଡ଼େ କଅଁଳ ତୁ ନିରୀହ-ପ୍ରାଣ
ରାହୁ-ମୁଖୁଁ, କେବେ ନ ପାଉ ତ୍ରାଣ ।

ମୁହେଁ ଦେଖି ତୋର କଳଙ୍କ ଦାଗ
ବିଧାତା ଉପରେ ହୁଏ ମୋ ରାଗ ।



## ପଲ୍ଲୀମାୟା

ଦୂର ଏ ପରବାସେ
ମୁଗ୍ଧ ମୁଇଁ          ଚାହିଁଛି ଏଇ
ସଞ୍ଜ ଶଶୀ-ହାସେ ।

ଶୀତଳ ଦେଖି କଅଁଳ ରାତି
ମେଲାଇ ତାରା ମୁକୁଳା ଛାତି
ଅବଶ ହୋଇ          ପଡ଼ିଛି ଶୋଇ
ଅନାଇ ନୀଳାକାଶେ ।

କୁଆଡ଼େ ନାହିଁ କେହି
ସହସା ଗାଆଁ          ମୂର୍ଚ୍ଛନା ମୋ
ଶ୍ରବଣେ ଉଠେ ଚେଇଁ ।

ମର୍ମରିତ ବନାନୀ ଗାନ
କୁଳାୟ-ଭରା ବିହଗ-ତାନ
ଦେଖେଁ ମୁଁ ତାର          ଶ୍ରୀ ସମ୍ଭାର
ମନ-ନୟନ ଫେଇ ।

ପଡ଼ଇ ମୋର ମନେ
ଭୋଦେଇ କିଆ          ବିକଶିବଣି
ଗାଆଁର ବିଲବନେ ।

ଏତିକିବେଳେ ପଲ୍ଲୀବାଳା
ସରାଗେ ଭରି ଅର୍ଘ୍ୟଥାଳା
ସଞ୍ଜବେଳେ ହେବେଣି ମେଳ
ପୂଜାର ଆୟୋଜନେ ।

ବାରିର ବାଡ଼େ ବାଡ଼େ
ଜହ୍ନିଫୁଲ ଅନାଉଥିବ
ବଧୂଲୀ ମୁହଁଆଡ଼େ
ଭୋଦୁଅ ଖରା କାଦୁଏ ପଣି
ଜୀବନ ତାର ନେବଣି ଶୋଷି
ହେବଣି କାଶ ପହିଲି ରାସ
ନଈର ଦାଢ଼େ ଦାଢ଼େ ।

ସୁନୀଳ ସର-କୋଳେ
କୁଆଁରୀ କଇଁ ବିଳସୁଥିବ
ମୃଦୁଳ ବୀଚିଦୋଳେ ।

ରାଣୀଫୁଲିଆ ଜୋଛନା ତଳେ
ଆପଣା ମୁଖେ ବିମଳ ଜଳେ
ଟଟ୍ଟରୁ ତରୁ ଥିବଟି ଚାହିଁ
କଜଳକଳା ଡୋଳେ ।

ନ ଥିବ ଆଉ ବଢ଼ି
କିଶୋର ତଳା କେଦାର-ବାସେ
ଲଗାଇବଣି ଧଡ଼ି ।

କ୍ଷେତର ଦଶା ଗୃହିଣୀ ପାଶେ
ବଖାଣୁଥିବ କିଷାଣ ବାସେ
ଥାଳିରେ ଖାଉଁ ଶୀତଳ ଜାଉ
ଲଗାଇ ଲୁଣ ବଡ଼ି ।

ପ୍ରବାସେ ରହେଁ ବାସ
ଗାଆଁର ମାଟି                    ମାନସ ଟାଣେ
ଦୀର୍ଘ ବାର ମାସ ।

ଗାଆଁର ନଈ କେଦାର ବନ
ସ୍ମୃତିରେ ମୋର ସାଇତା ଧନ
ଜୀବନ ତହିଁ                    ଅଛି ରେ ରହି
ଅଛି ରେ ସୁଖ ହାସ
ପ୍ରବାସେ ରହେଁ ବାସ ।

□□

## ଶିଶୁ ସାହିତ୍ୟ

# କଥାର ନଥା

କିଇସ କଥା–
କଥା ମାଡ଼ିଯାଏ
ନୀତି କଥା ଏକା
ଆଉ ସବୁ କଥା
ତତ୍ତ୍ୱ କଥା ଶୁଣି
ମନ-ନରଦମା
ଶୁଖିଲା କଥାରେ
ଦାନ୍ତୁଆ କଥାଟି
ଡେଙ୍ଗା କଥା ସବୁ
ରୁଷ ନାହିଁ ପର-
ଘର କଥାଯାକ
ହାଡ଼ଜଳା କଥା
ସାଉଁଳା କଥାରେ
ଚୁପୁ ଚୁପୁ କଥା
ଅଲଣା କଥାରେ
ନିନ୍ଦା କଥା ଦୂରୁ
ବଡ଼ ଘର ବଡ଼
ପାଟି ନ ଫିଟାଇ
ଅସଲ କଥାଟି
ବାଜେ କଥା ଶୁଣି
ବୃଥା କଥା କହି
ଗହୀର କଥାକୁ

ବେଙ୍ଗୁଲୀ କଥା
ମେଲେଇ ଲତା ।
କଥାର ସାର
ପାଣିର ଗାର ।
ନ ହୁଅ ଖପା
କରେ ସେ ସଫା ।
ନ ସିଝେ ଶାଗ
ବଢ଼ାଏ ରାଗ ।
କଳିର ମୂଳି
କଥାକୁ ଶୁଣି ।
ନଳାରେ ଯାଉ
ନ କହ ଆଉ ।
ତରଳେ କାଠ
ମାରଇ ଛାଟ ।
ନ ମିଳେ କିଛି
କରିବ ଛି-ଛି ।
ଗୁମର କଥା
କାନକୁ ପତା ।
କଥାର ମଞ୍ଜି
ନ ହୁଅ ଗଞ୍ଜି ।
ଝଡ଼ା ନା ଭାତ
ନ ପାଏ କାତ ।

ମିଠା କଥାକୁ ତ
ଚିକଣା କଥାଟି
ସଂସାର ବାଇ
ତା ବଡ଼ଭାଇ ।

ଆଡ଼ଶୂଙ୍କା କଥା
କଡ଼ା କଥା କଟା-
ଛୁଞ୍ଚିର ମୁନ
ଘାଆକୁ ଚୂନ ।

ପିଣ୍ଡାବସା କୋଢ଼ି
ଚାଉଳିଆ କଥା
ଠାପୁଆ ଯିଏ
ଚୋବାଏ ସିଏ ।

ପଉରୁଷୀ କଥା
ଜୀବ ଯାଉ ପଛେ
ହାତୀକା ଦାନ୍ତ
ରଖଇ ସତ ।

ସାତ କଥା ଶୁଣି
ଗପ କଥା ସାରା
ସତୀ ବି ଭୁଲେ
ଦୁନିଆ ବୁଲେ ।

ଅଳପ ପାଣିର
ଟିକିଏ କଥାରୁ
ବହୁତ ରବ
ବଡ଼ ପରବ ।

ମନକଥା ସିନା
ମଜା କଥା ଏକା
ଖଣ୍ଡିଆଳି କଥା
ଶାଣଦିଆ କଥା
ଜାଣଇ ମନ
କଥାର ଧନ ।
ଗଣ୍ଠି ବଢ଼ାଏ
କଲିଜା ଖାଏ ।

ଟାଣ ଟାଣ କଥା
ଲୋକହସା କଥା
ବଜର-ନିଆଁ
ମାଡ଼ଇ ଚିଆଁ ।

କାଲ ଠାର କଥା
ତାଜୁବ କଥାଟି
କାଲ-ମା ଜାଣେ
ଚମକ ଆଣେ ।

ପିଲାଦିନ କଥା
ଗଲା-କଥା ସବୁ
ପିଲାକୁ ପାଏ
ଖତକୁ ଯାଏ ।

ମନଗଢ଼ା କଥା
ଗୂଢ଼ କଥା ରକ୍ଷି
ଆଇମା ଗପେ
ମଉନେ ଜପେ ।

ଦିହଘଷା କଥା
ଠିକଣା ଲୋକର
କଂସାରୀ-ପାରା
କଥାଟି ଖାରା ।

ଗୁମରବାଜରି
ଇସାରା ପାଇଲେ
ଗୁପତ କଥା
ବଥାଏ ମଥା ।

ଅତି ବଢ଼ି ବଢ଼ି କଥା ଯେ କହେ
ବସୁଧା ତାହାକୁ ମୋଟେ ନ ସହେ ।

ଛୋଟ-ମୁହେଁ କହେ ଯେ ବଡ଼ କଥା
ଦିହରେ ମନରେ ଭୋଗେ ସେ ବଥା ।

ମନରଖା ମନ- ବହଲା କଥା
ଏ ଦୁହେଁ କେବଳ ବାଆକୁ ବତା ।

କଳିହା କାଢ଼ଇ କଥାରୁ ଖିଅ
ବୁଦ୍ଧିମାନ ମାରି- ନିଅଇ ଘିଅ ।

ଘୋଟି ଘୋଟି ଖାଲି ଆଣ୍ଠୁଆ ମରେ
ବୋକା ଖୁମ୍ପଆକୁ ବୁଝେ ଶେଷରେ ।

ଗାଲୁ କଥା ଏକା ପାଞ୍ଚିଙ୍କ କାଞ୍ଚି
ସତ କହିବାକୁ ପୂରା କେ ରାଞ୍ଚି ?
ଅମୂଲ୍ୟ ବଚନ ବେଦର ଗାର
ସବୁ କାଳେ ଟେକ ଥାଏଟି ତାର ।

□□

# କଅଁଳ ସଅଁଳ

ସୁଲୁସୁଲୁ ରାତି ଶିତୁଳିଆ ବାଆ କି କନକନ
ଉଷୁମ ଉଷୁମ କଅଁଳ ଶେଯକୁ ଡାକଇ ମନ ।

କଅଁଳ ବଚନ ମହୁପଣା ଦିଏ ମନରେ ଢାଳି
କଅଁଳ ଚାନ୍ଦଟି ଜଳଇ ସତେ କି ରୂପାର ଥାଳି ।

ବେଳକାଳ ଉଣ୍ଡି ତେଜ ଦେଖେଇବା ଖରାର ଖୋଇ
ଖରା ନ ଥିଲେଟି ଉପାସେ ପୃଥିବୀ ଥାଆନ୍ତା ଶୋଇ ।

ଖରା ପରି ଟାଣ ହୋଇ ସଭିଙ୍କର ସାଧିଲେ ହିତ
ଦୁନିଆ ମୋ ସଙ୍ଗେ ସ୍ନେହ-ଅଭଡ଼ାରେ ବସିବ ମିତ ।

□□

# ପାଣିପଣା

"ଜଳ ତ ଜଳ ଇନ୍ଦ୍ରଜଳ
ବଳ ତ ବଳ ଆପଣା ବଳ ।"
ଶୁଣ ଶୁଣ ଆରେ ମୋ ବାଇଧନ !
ଆକଳନ୍ତା ପାଣି ମଣିଷ ମନ ।
ଆଝଉଁ ଯିଏ ବା ସିଆଣ ଏଡ଼େ
ପାଣି ପଡ଼ିଲେ ସେ ନ ହବ କେଡ଼େ ।
ମନ୍ତୁରା ପାଣିକୁ ଡାଆଣୀ ଡରେ
ଦୁଃଖୀ ଆଖିପାଣି ଆଖିରେ ମରେ ।
ଗୋଳିଆ ପାଣିର କପାଳେ ଗାଳି
ସୋଡ଼ାପାଣି ଦିଏ ପେଟ ହକାଳି ।
ପଚା ପାଣି ସବୁ- ପାଣିଙ୍କ ଦାସ
ଅଥଳ ପାଣିରେ ହଜେ ସାହସ ।
ଯମରଜା ଯାକୁ ନିମିତା କରେ
ଟୋପିଏ ପାଣିରେ ବୁଡ଼ି ସେ ମରେ ।
ତୁଣ୍ଡେ ରଖେ ଯେହୁ ହାଣ୍ଡିଏ ପାଣି
ଶୁଣ୍ଢା ଶାଶୁ କହେ ବଡ଼ ଘରଣୀ ।
ଗଉଁକୁ ଦଉଡ଼ି ନ ପାଏ ଯାର ।
ମଗଜରେ ପାଣି ନ ଗଳେ ତାର ।
ନିତି ପିତା ପାଣି ଆଉଟେ ଯିଏ
ଗେରସ୍ତ ତାହାର ଗଞ୍ଜେଇ ପିଏ ।
କୋଠା ପଛ ପଟେ ନାଳୁଆ ପାଣି
ଗୁଣ ପଛେ ଦୋଷ ଲଟକେ ଜାଣି ।
ବେସର ପାଣିରେ ଇଲିଶି ତୁଣ
ମାତାଜୀ ହେଲେ ବି ଗାଏ ତା ଗୁଣ ।

ମନ୍ଦୁ ଖୋଜୁଥାଏ କାକର ପାଣି
ବଇଦ ବତାଏ ଥିରି ତୋରାଣି ।
ନାକ-ସୁଡୁକାକୁ ପାଣିଟି ଧରେ
ଅତୁଠର ପାଣି ଡାକଇ ଜରେ ।
ଶୁଖିଲା କାଠୁଁ ଯେ ବୁହାଏ ପାଣି
ଜାଣିଥିବ ତାକୁ ଅତି ସିଆଣୀ ।
ଧୀର ପାଣି ଏକା ପଥର କାଟେ
ସୁଅ ପାଣି ଯାଏ ତା ବାଟେ ବାଟେ ।
ଯାହାକୁ ଧରଇ ଜନମ ପାଣି
ନାକୁ ତା ନ ଛାଡ଼େ ଧାର ସିଂଘାଣି ।
ବାହାପାଣି ଯାର ଦିହରେ ପଡ଼େ
ଚାନ୍ଦକଳା ପରି ଚାଣ୍ଡେ ସେ ବଢ଼େ ।
ନିଶାପାଣି ସଦା ଅମଳ ଯାର
ଆଗା ପିଛା କିଛି ନ ଥାଏ ତାର ।
ଦିହେ ଯାର ଚଳେ ସବୁଠା ପାଣି
ଅଣ୍ଡାଳେ ନାଇଁ ସେ ବଇଦ-ମୁଣି ।
ଶେଷେ କାଞ୍ଜିପାଣି ପଶିଲା ଖରେ
ଗାଆଁ ଶେଷ ମୁଣ୍ଡ ବାହୁଣୀ ଘରେ ।
କଞ୍ଚା ପାଣି ଯେବେ ଲାଗଇ ଦିହ
ଝଅଟ ପିଇବ ଉଷୁମ ଘିଅ ।
ପିଆଦା ଅଇଲେ ସମନ ଆଣି
ଛାତିପରେ କାଟେ ଚାଲଇ ପାଣି ।
କୁଆ-ଆଖି ପରି ଚୁଆର ପାଣି
ପେଟୁଲି କଳସୀ ନିଏ ତା ଟାଣି ।
ଅଚଳନ୍ତି ପାଣି ରୋଗର ଗୋଡ଼
ଗଣ୍ଡପାଣିଠେଇଁ ନ ରହେ ତୋଡ଼ ।
ପଥର ପାଣିରେ ନ ଥାଏ ମଳି
ଦୟାଳୁ ଲୋକର ମନଟି ଭଳି ।

ଲାଜପାଣି ଯାର ନ ଥାଏ ମୁହେଁ
ଦେବତା ହେଲେ ବି ତା ପାଦେ ନୁଏଁ ।
ପାଣି ସଙ୍ଗେ ଯିଏ କରେ ଲଢ଼େଇ
ଜୀବନ ଦିଏ ସେ ପାଣି ଛଡ଼େଇ ।
ପିଲା-ଧୂଳିଖେଳ ପାଣିର ଗାର
ପାଣିର ଫୁଟୁକା ପ୍ରାଣ ମାତର ।
ପାଣି ଫାଟିଯାଏ ପାଣିଆ ଜାଉ
ସହି ନୁହେଁ ପାଣି ହୋଇଲେ ତାଉ ।
ପାଣି ଯେବେ ହୁଏ ହିମ କାକର
ଦାସେ ପାଲଟନ୍ତି ବୁଢ଼ା ମାଙ୍କଡ଼ ।
ନସି ପାଣି ଯାର ନ ବୁହେ ଟିକେ
କଥାରେ ଖାଲି ସେ ରାଇଜ ବିକେ ।
ସହିଚି ଯେ ବୋହୂ ଅକଲ-ନାତ
ଠାଆପାଣି କରି ବାଢ଼େ ସେ ଭାତ ।
ପାଞ୍ଚନ ପାଣିଟି ରୋଗକୁ ମାରେ
ହୋରି ରଙ୍ଗପାଣି ମହତ ସାରେ ।
ପାଣି ଉପରେ ଯେ ପକାଏ ସର
ସେହି ରଖେ ସାରା ରାଜ୍ୟ ଖବର ।
ନାସରୁ ଚିମୁଟେ ନେଲେଟି ଟାଣି
ମଗଜୁଁ କାଢ଼ି ସେ ଆଣଇ ପାଣି ।
ସାତ ତୁଠ ପାଣି ଚାଖଇ ଯିଏ
ଅତି ସିଆଣାଙ୍କ ଗୁରୁଟି ସିଏ ।
ଇମିତିଆ ପେଟୁ ଅଛନ୍ତି ଭାଇ
ପାଣି କରନ୍ତି ସେ ପଥର ଖାଇ ।
ଝୁନୁଝୁନୁ ନଈ- ପାଣିର ଗୀତ
ବରଷଣା ପାଣି ମାଟିର ମିତ ।
ଚାଆ ପାଣି ରଖେ ମିଜାସ ତାଜା
ପଇଡ଼ ପାଣିଟି ପାଣିଙ୍କ ରାଜା ।

ମିଳେ ଦାନା ପାଣି ଥିଲେ ନିଅତ
ଅତି ଶୋଷେ ପାଣି ରଖେ ମହତ ।
ଛରା ପାଣି ଘର- କୀଟଙ୍କ ଯମ
ଝର ପାଣି ନାଚେ ଝଅମଝମ ।
ଘର ବୁଡ଼ି ପାଣି ହେଲେ ଆଣ୍ଠିଏ
ଛାତିରେ ଛନକା ପାହାର ଦିଏ ।
ଆଉ ତ ନାହିଁ ରେ ଦୋଅଡ଼ା ପାଣି
ଦେଏ ଧନମଣି ! ଟାଆଣିଟୁଣି ।
ବେଙ୍ଗ ମୂତିଦେଲେ ନଳାରେ ପାଣି
ଗାଆଁ ପାଣି କରେ କି ଠାଣିମାଣି ।
ସଫା ପାଣି ପରି ସରଳ ମନ
ଅସଲ ଖୋରାକ ପାଣି ପବନ ।
''ଯାହାକୁ କହନ୍ତି କୁଆ-ହାଣୀ
ସେଇ ରଖେ ଶେଷେ ନାଆଁ ପାଣି ।''



## ଭାତତୋରାଣି

ଭାତ ରେ ଭାତ
ଭାତ ମଣିଷର ଦ୍ୱିତୀୟ ମାତ
ଦିନେ ନ ପଡ଼ିଲେ ପେଟରେ ଭାତ
ଶୁଅଇ ମଣିଷ ଚିଇତ୍‌କାତ୍ ।
ଯେତେ ଚିନ୍ତା ଦକ ଅଛି ରେ ଭାଇ !
ଭାତ ଚିନ୍ତାଠଉଁ ବଳି କେ ନାହିଁ ।
ଭାତର ଭାବନା ଯାହାକୁ ଘାରେ
ଜୀବନ ବିକେ ସେ ପର ଦୁଆରେ ।
ଲାଜଟିକ ପାଣି- ଛଡ଼େଇ ଲୋକ
ବାର-ଘର ବୁଲି ମାଗଇ ଭିକ ।

ଗେଣ୍ଡୁଟି ଚୁଲିରେ କଇଁଆ ଖୋଳେ
ଖେଳ ଭାତ ଛୁଆ ରାନ୍ଧନ୍ତି ଭୋଳେ ।
ପରଘର ଭାତ ଫାଳୁଆ ଗୁଣ୍ଡା
ଗେଫୁଥିଲେ ଦିହ ହୁଅଇ ଭୁଣ୍ଡା ।
ପଖାଳ ଭାତରେ ଶୁକୁଆ ପୋଡ଼ା
ତୃଣ ଶାଗ ଆଉ ନ ହୁଏ ଲୋଡ଼ା ।
ପେଜୁଆ ଭାତରେ ଖାଇଲେ ଘିଅ
ନିଦା ଲୁହା ପରି ପାଲଟେ ଦିହ ।
ଖାଡ଼ିମରା ଭାତେ ପଡ଼ିଲେ ସର
ଡାଲି କଥା ଆଉ ମନେ ନ ଧର ।
ବସାଦହି ହେଲେ ଅରୁଆ ଭାତେ
ପେଟ ଓହଳଇ ଆଗକୁ ହାତେ ।
ଉଷୁମ ଭାତରେ ଭାକୁର ଝୋଳ
ବାପ ପୁଅ ମଧ୍ୟେ ଲାଗଇ ଗୋଳ ।
ଝଡ଼ିଆ ପାଗରେ ତବତ ଭାତ
ଅଣନିଶୁଆସେ ଚାଲଇ ହାତ ।
ବଗଡ଼ା ଭାତକୁ କଳମ ଶାଗ
ଲକ୍ଷ୍ମୀ ପରଷନ୍ତି ବିଷ୍ଣୁଙ୍କୁ ଆଗ ।
ସରୁ ଥଣ୍ଡା ଭାତ ବଦହଜମ
ଖାଇ ଖାଇ ଲୋକ ଭେଟଇ ଯମ ।
ବଡ଼ ଚିଡ଼ିଚିଡ଼ା ଗୋଡ଼ିଆ ଭାତ
ମଠେଇ ମଠେଇ ଚାଲଇ ହାତ ।
କାନିକା ଭାତରେ ନଡ଼ିଆ କୋରା
କଳା ଚମଡ଼ା ବି ପାଲଟେ ଗୋରା ।
ଚାଉଳିଆ ଭାତ କି ଟାଣ ଟାଣ
ରାତି ଅଧେ କହେ ବଇଦ ଆଣ ।
ଯତନେ ଛୁଆକୁ ଗୋସିଁମା ପାଳେ
ବଢ଼ାଭାତ ଖୋଇ ବଡ଼ି ସକାଳେ ।
ଖାଉଥିଲେ ମିଳି ପାଆଞ୍ଚ ସାତ
ବେଳା ପରେ ବେଳା ଉଠଇ ଭାତ ।

ଟାଣୁଆ ଖେଚଡ଼ି ପାଟିକି ମିଠା
ଝଡ଼ ରାତେ ଡାକେ କବାଟ ଫିଟା ।
ନରମା ଭାତଟି ବୁଢ଼ାଙ୍କୁ ଭଲ
ଦରଫୁଟା ଭାତ ସଭିଙ୍କି ସଲ ।
ଛଅ ତୁଣ ନଅ- ଭଜା ଦେଖିଲେ
ଭୋଜି ଭାତପାଇଁ କୁଦନ୍ତି ପିଲେ ।
ଉଆ ଭାତ ଦିହେ ବଢ଼ାଏ ବଳ
ସୁଖଦୁଃଖ-ସାଥୀ ଶାଗ ପଖାଳ ।
ଯାକୁ ମାରିବାକୁ ଦଇବ ଜଗେ
ଭାତ ଖାଇ ସିଏ ଚାଉଳ ହଗେ ।
ଅଲକ୍ଷଣା ବାଇ ଯାହାକୁ ଛୁଏଁ
ଘିଅ ଭାତ ତାକୁ କୁଣ୍ଢେଇ ହୁଏ ।
ଜାଉଆ ଭାତରୁ ପଡ଼ିଲେ ପେଟେ
ଦଣ୍ଡକେ ମଣିଷ ପଡ଼ିଆ ଭେଟେ ।
"ପଢ଼ିଲେ ଶୁଣିଲେ ଦୁଧ-ଭାତ
ନ ପଢ଼ିଲେ ବାବୁ ! ଠେଙ୍ଗା-ନାତ ।"



# ଓଦାସନ୍ତିଆ

ଓଦାଳିଆ ମାଟି
ଭୋକବେଳେ ଜିଭ
ମୁଣ୍ଡ ଓଦା ହୁଏ
ଓଦା ଦେଖି ଥଳି
ଓଦା ଗାମୁଛାଟି
ଓଷାଦିନେ ତୁଣ୍ଡ
ମୁଣ୍ଡ ଓଦା ହେଲେ
ପେଟ ଓଦା ଥିଲେ
କଦଳୀ ଚାଷକୁ
ଓଦା ନୋହିଥିଲେ
ଗଜିରିଲେ ବୁଦ୍ଧି
ଅଜଣା ଅଚିହ୍ନା
ମଥାରେ ପକାଇ
ଓଦା ନୋହିଥିଲେ
ଉକୁଣିମାନଙ୍କୁ
ନସରପସର
ସାଲସା ପିଆଇ ଦିଏ
କାହାକୁ ପଚାରେ କିଏ ?
ଜିଭ ଓଦା କରେ ଗୀତ
ବସନ୍ତି ସଙ୍ଗାତ ମିତ ।
ଖରାରେ ଚାଲିବା ଭଲ
ପ୍ରାଣ କେଡ଼େ କଲବଲ ।
ମିଳିଯାଏ ଭୋଜିଭାତ
ହେଉଥାଏ ଗୋଡ଼ହାତ ।

ଝାଞ୍ଜି ଖରାବେଳେ ଓଦା ଭୂଇଁତଳେ ଗଡ଼ିବାକୁ ହୁଏ ମନ
ଝାଳୁଆ ଦେହରେ ଓଦା ପବନଟି ବୋଳଇ କିବା ଚନ୍ଦନ ।
ପବନ ମୁହଁରେ ଓଦା ଛାଳେ ବସି ରୋଷେଇ କରିବା ମଜା
ମଉଛିଆ ଖାନା ଡହ ଡହ ଖଟା ସାଙ୍ଗକୁ ଶୀତଳ ଭଜା ।
ଓଦା ଗୋଡ଼େ ନିତି ବିଛଣା ଧଇଲେ କାଶ ହୁଏ ଚିରସାଥୀ
ହାତ ଓଦା ଥିଲେ ଶହ ଶହ ଲୋକ ଜୁହାରନ୍ତି ଦିନ ରାତି ।

□ □

# ବାଇଆ ରଜା

କିଇରେ ଟୋକା ! କିଏ ସେ ତତେ
ଖୋଇଲା ଆଜି ହସର ଲଡୁ
ବାଇଆ ରଜା ! ବାଇଆ ପରି
କାହିଁକି ଆରେ ଧୂଳିରେ ଗଡୁ ।

ହସ ଓ ଖୁସି ଯାଆଁଳା ଭାଇ
ଖେଳୁଛନ୍ତି କି ପେଟରେ ତୋର
ହାବୁକା ମାରି ପାଟି ଭିତରୁ
ହସ ଢେଉ ତ ଉଠୁଚି ଜୋର ।
ନକିଲି ହସ ବରଫ ପରି
ଦାନ୍ତ ମୂଳରେ ମିଳେଇଯାଏ
ଅସିଲି ହସ ନାହିଁ ମୁଣ୍ଡରୁ
ଆସଇ ମାଡ଼ି ଜୁଆର ପ୍ରାୟେ ।
ହସି ହସିକା ପାରେ ଯେ କାନ୍ଦି
ସେହି ହସଟି ହସର ହସ
ପରାସ ଯେବେ ନ ଲାଗେ ପେଟ
ତହିଁରେ କିଛି ଥାଏ କି ରସ !

ମୁରୁକି ହସ ମହୁଲ ଫୁଲ
ହୋଓ-ହୋ ହସ ମିଶିରି ମିଠା
ଫାଟିଲା ଓଠ ଶୁଖିଲା ହସ
ଗମରା ଖୁଦ ଚକୁଳି ପିଠା ।

ନ ଖାଆ ଫଳ ନ ଖାଆ ମାଛ
ନ ଖାଆ ଦୁଧ ଲହୁଣୀ ସର
ନିଇତି ଟିକେ ପାରିଲେ ହସି
ବଢ଼ିଯିବ ତୋ ଆଇଷ ବଳ ।
ଚିନ୍ତା ରୋଗର ଅସଲ ଜଡ଼ି
କଉତୁକର ନିଘନ ସାଥୀ
ଛାଡ଼ିବୁ ନାହିଁ ଛାଡ଼ିବୁ ନାହିଁ
ସେହିଟି ସବୁ ସୁଖର ଥାତି ।

ଦେଇଛି ଦାନ୍ତ ଦେଇଛି ମନ
ହସେଇବାକୁ ବିଧାତା ତତେ
ଖୁସିରେ ନାଚି ବାଇଆ ରଜା
ନିଜେ ତୁ ହସି ହସାରେ ମତେ ।

□ □

## ଶବ୍ଦ-କସରତ୍

ମଣିଷ ଛୁଆ କଇଁ କଇଁ
ପଶୁ ଛୁଆ ମିଉଁ
ପକ୍ଷୀ କୀଟ ତୁଣ୍ଡ ଖାଲି
ଶୁଭେ ଚିଉଁ ଚିଉଁ ।

ଛେଳି ବୋବାଏ ଅରର୍ ମେଁ
ହମ୍‌ମା କହେ ଗାଈ
ହୁକ୍‌କେ ହୋ ବିଲୁଆ ଡାକେ
ତୁହାଇ ତୁହାଇ ।

ମେଣ୍ଢା ରଡ଼େ ଭେଏଁ ଭେଏଁ
ଓଟ କାଶେ ଖୁଉଁ
ଗଧ ହୁଏ ହାଉ ହାଉ
ଭେରେଣ୍ଡା କହେ ମୁଉଁ ।

କୁକୁର ଭୁକେ ଭୋଓ ଭୋ
ଷଣ୍ଢ ହାକୁଡ଼େ ଗିର୍‌ର
ହେଁ ହେଁ ହେଁ ହସେ ଘୋଡ଼ା
ଘୋଡ଼ୀ କିର୍ କିର୍ ।

ବିରାଡ଼ି ହୁଏ ମ୍ୟାଉଁ ମ୍ୟାଉଁ
ମୂଷା ଚିଇଁ ଚିଇଁ
ହନୁ ମାଙ୍କଡ଼ ଖତେଇ ହୁଏ
ଖିଇଁ ଖିଇଁ ଖିଇଁ ।

କୁଆ ରାବେ କାଆ କାଆ
ଶୁଆ କହେ କୁର୍‌ର
ହୁଳହୁଳି ଦେଇ ବଣି
ଉଡ଼ିଯାଏ ଫୁର୍‌ର ।

କୁଉ କୁଉ କୋଇଲି ଡାକେ
ଡାହୁକ କକ୍ କକ୍
ରାଧେକୃଷ୍ଣ ଜପେ ସାରୀ
କୁକୁଡ଼ା ହରି ରଖ୍ ।

କପୋତୀ କହେ ପୂରିଲା ମାଣ
ଉଠ୍‌ରେ ପୁତା ଉଠ୍
ଗୁଉକାଳିକା ଚେଏଁ ଚେଏଁ
ବାଦୁଡ଼ି ଭୁଟ୍ ଭୁଟ୍ ।

ବତକ ଡାକେ କଡ଼ି କଅଡ଼ି
ମେଲି ନାଲି ଥଣ୍ଟ
କାହ୍ନୁ ଗୋପରେ ଗଛେ ଡାକେ
ହଳଦୀ ବସନ୍ତ ।

କେଏଁ କଟର ବେଙ୍ଗ ଡାକି
ପକେଇ ଦିଏ ହୁରି
ବୁଦା ଭିତରେ ଝିଣ୍ଟିକା ଲୁଚି
ବଜାଏ ମହୁରୀ ।

ଭଅଁର ଗାଏ ଗୁଣୁ ଗୁଣୁ
ମାଛି ଗଣ ଗଣ
ଅନ୍ଧାରେ ମଶା କାନ ପାଖେ
ହୁଏ ଭଣ ଭଣ ।

ମଟର ହୁଏ ପେଏଁ ପେଏଁ
ରେଳ ଧମାଧମ୍
ପବନ ପରି ବାଇକ୍ ଛୁଟେ
ନ ମାରି ବାଟେ ଦମ୍ ।

ରିକ୍ସା ଚାଲେ ଟିଂ ଟିଂ
ବଗି ଟପାଟପ୍
ବୋଟ୍ ଧାଏଁ ଭୁର୍ରର ଭୁର୍
ରୋଲର ହପ୍ ହପ୍ ।

ଆକାଶେ ଛୁଟେ ଉଡ଼ାଜାହାଜ
ଭଅଁ ଭଅଁ ଭଅଁ
ବଳଦ ଗାଡ଼ି ଶୁଭଇ ଦୂରୁଁ
ଟି-ଟି-ହଃ ହଃ ହଃ ।

ସୁଆରୀ କହେ ହାକୁମଧାବ
ଆରେ ମେରା ବାପ୍
ସବୁବେଳେ କେବଳ ଚାଲେ
ସମୟ ଚୁପ୍‌ଚାପ୍ ।

# ଯେତେ ହଲେଇବୁ ହଲା

| | |
|---|---|
| ମତେ | ଯେତେ ହଲେଇବୁ ହଲା |
| ମୁଁ ତ | ତଳେ ନ ପଡ଼ିଲେ ଗଲା । |
| ଡାକେ | ଦୋଳିମୁଣ୍ଡ କଟ କଟ |
| ମୂଷା | କାଟିନେଲା ଆଇ ଜଟ । |
| ଶୁଣି | ଅଜାକୁ ଆସିଲା ଜର |
| ଘରେ | ବିରାଡ଼ି ସାଜିଛି ବର । |
| ବେଙ୍ଗ | ବଜାଉଛି ପେଏଁକାଳି |
| ତେଣେ | ଝିଣ୍ଟିକା ଧରିଛି ପାଳି । |
| ମେଣ୍ଢା | ହାତେ ଜିଭ କାଢ଼ି ମଲା |
| ମତେ | କେତେ ହଲେଇବୁ ହଲା । |
| ବିଲେ | ଶିଆଳ କରୁଛି ନାଟ |
| ବେକେ | ଲଗାଏ ଶିଆଳୀ ଛାଟ । |
| ସାରୀ | ଜନମ କରିଛି ବଣି |
| ଶୁଆ | ପଥ୍ ଦିଏ ଖୁଦ କଣି । |
| ନିମ | ଗଛରେ ଫଳିଛି ଶିମ |
| ଘୋଡ଼ା | ପାଣିରେ ଦେଇଛି ଡିମ । |
| ଭଲା | ଦଇବ କଅଣ କଲା |
| ଆରେ | କେତେ ହଲେଇବୁ ହଲା । |
| ଯେତେ କହିଲେ | ବୁଝେଇ ମାଆ |
| | ଶୋଇ ପଡରେ ଧନ |
| ପୁଅ କାହିଁକି | ଶୋଇବ ଟିକେ— |
| | ଆହୁରି ଗରଜନ । |

□ □

# ଭୋକିଲା ଭାଲୁ

ମେଘ    କାଶୁଅଛି ଖୁଉଁ ଖୁଉଁ
ବାଆ    ବାହୁନୁଛି ସୁଉଁ ସୁଉଁ ।

ମାଆ    ଯାଇଅଛି ବାପ ଘର
ଏଣେ    ପିଲା ଦୁଇ ହରବର ।

କାହ୍ନୁ    ନକ୍ଷିମୀର ସାନ ଭାଇ
ବେଳ    ବୁଡ଼ିଲା ମାଆକୁ ଚାହିଁ ।

ନକ୍ଷୀ    କହେ ଥରୁଚି ମୋ ଛାତି
ଆଜି    କିମିତି ପାହିବ ରାତି ।

ଦୁହେଁ    ଚକିଆରେ ମୁହଁ ଢାକି
ନିଦେ    ଶୋଇଲେ ପ୍ରଭୁଙ୍କୁ ଡାକି ।

ଏକ    ଭାଲୁ ଆସି ଦାଣ୍ଡ ପଟେ
ଭାବେ    ଏ ସୁଯୋଗ କାହିଁ ଘଟେ ।

ଯେବେ    ଫେରିବି ଏ ମାଲ ଛାଡ଼ି
ସ୍ତିରୀ    କହିବ ତ ମୁହଁ ଝାଡ଼ି ।

ଆଜି    ସହଜେ ଜଳୁଛି ପେଟ
ଏବେ    ଅସଲ ହେଲାଣି ଭେଟ ।

ସବୁ    ଉପାୟ ପାଞ୍ଚି ସେ ମନେ
କଳା    ମେଘକୁ ଚାହିଁଲା କ୍ଷଣେ ।

ହୁରୁ    ତୋଫାନ ଆସୁଛି ଧାଇଁ
ନିଶା    ଗରଜୁଛି ସାଇଁ ସାଇଁ ।

ଦିହେ    ପଡୁଛି ବରଷା ଛିଟା
ଡାକେ    ଫିଟାଲୋ କବାଟ ଫିଟା ।

ଶୀତେ ଆସିଲାଣି ମତେ ଜର
ଟିକେ ଖୋଲିଦିଅ ଭଲା ଘର ।

ନକ୍ଷୀ ସପନ ଦେଖିଲା ଭଳି
ଶେଯୁଁ ଉଠି ଗଲା ଆଖି ମଳି ।

"ବୋଉ କିମିତି ଆଇଲୁ ଆଲୋ
ଆଜି ଏ ଯୋଉ ବତାସ ମା'ଲୋ ।

ଆମେ ଭାବି ଭାବି ସେହି କଥା
ପଡ଼ି ଆସୁଥିଲା ଆଖି ପତା ।"

"ନକ୍ଷୀ ଅଇଲାଣି କି ଲୋ ବୋଉ
ଆଜି ପାଗ ତ ହେଇଛି ଯୋଉ..."

ଶୁଭେ "କାତିରି ଗଲାଣି ଦିହ
ମତେ ହେଁସ ଖଣ୍ଡେ ଘୋଡ଼ିଦିଅ ।"

କାହ୍ନୁ ଭାବଇ ହେଲା କି ଜର
ଗୋଡ଼ ମୋଡ଼ିବାକୁ ଡର ଡର ।

ଭାଲୁ କହଇ, "ନାଇଁରେ ଥାଉ
ଆଜି ଘଷା ଲୋଡ଼ା ନାହିଁ ଆଉ ।

ଜରେ ବୁଲେଇ ଦଉଚି ମୁଣ୍ଡ
ଜମା କର ନାହିଁ ପାଟି ତୁଣ୍ଡ ।"

ନକ୍ଷୀ କହିଲା, "ନାଇଁଲୋ ନାଗଁ
କେତେ ଚାହିଁଥିଲୁଁ ତୋଓ ପାଇଁ ।"

କହି ଝିଙ୍କିନେଲେ କରି ବାଦ
ଦୁହେଁ ଦୁଇଆଡୁ ଦୁଇ ପାଦ ।

ଆରେ ଖାଇଲା କି ଆସି କାଳ
ଜଣ ହାତକୁ ଲାଗୁଛି ବାଳ ।

ଆଜି ପାହିବ ନାହିଁକି ରାତି
ଭୟେ ପଡ଼େ ଉଠେ ଖାଲି ଛାତି ।

ଗୋଡ଼ ଉଣ୍ଡାଳି ବାରିଲେ ସବୁ
ଖଞ୍ଜେ ଚମ୍ପଟ୍ ଦେଲେ ସେ ଘରୁ ।

ଏଣେ     ବାହାରୁ ଦୁଆର କିଳି
"ଧାଇଁ     ପଡୁ ହୋ"—ଡାକିଲେ ମିଳି ।
ଭାଲୁ     ଭୋକରେ ଜିଭକୁ ଚାଟି
ଘରୁ     କରୁଛି କେବଳ ପାଟି...
"ଆଲୋ     କାହିଁ ପଳେଇଲୁ ନକ୍ଷୀ
ମୋର     ବାଳୁଆ ଗୋଡ଼କୁ ଦେଖି ।
ଆରେ     କୁଆଡ଼େ ଛପିଲୁ କାହ୍ନା
ମୋର     ବାଳୁଆ ଗୋଡ଼କୁ ଅନା ।"

□ □

## ପକ୍ଷୀ ମାଷ୍ଟ୍ରେ

କହିଲା ବଣି     ମାଆଲୋ ମତେ
ଦେଏ ସିଲଟ ଖଡ଼ି
କଜଳପାତୀ     ଘରକୁ ଆଜି
ଯିବି ମୁଁ ପାଠ ପଢ଼ି ।
ଗହୀର ବିଲ     ଶିମିଳି ଡାଳେ
ବସିଛି ଚାଟଶାଳୀ
ଜଣ ଜଣକି     ଆସୁଅଛନ୍ତି
ଯେଦିନ ଯାର ପାଳି ।

□ □

## ଧୂଳିରେ କିଆଁ ଖେଳ

ଧୂଳିରେ କିଆଁ     ଖେଳ ହେ ପିଲେ     ଧୂଳିରେ କିଆଁ ଖେଳ
ଧୂଳି ଖେଳରେ     କଟଇ ତୁମ     ସକାଳ ସଞ୍ଜବେଳ ।
ଧୂଳିରେ ଗଢ଼     ଦେଉଳ ଘର     ଧୂଳିରେ ରାନ୍ଧ ଭାତ
ଧୂଳିରେ କର     ପୋଖରୀ କୂଅ     ଧୂଳିରେ ଖୋଳି ଗାତ ।

ଧୂଳିରେ ଚାଲି ଧୂଳିରେ ବୁଲି ଧୂଳିଆ ତୁମ ଦିହ
ଧୂଳିର ଏଇ ଅବିର ପିଲେ ସବୁଠୁଁ ତୁମ ପ୍ରିୟ ।

ଦିଅନ୍ତି ବାପା ଦାମିକା ଜାମା ବଜାରୁ ବାଛି ବାଛି
କହନ୍ତି ବୋଉ ହାଲିଆ ମୁହିଁ ନିଇତି କାଚି କାଚି ।

ଧମକ ଡରେ ଯେ ଦିନ ତୁମେ ଧୂଳିକି କର ପର
ସପନ ଦେଖ ରାତିରେ ତୁମେ ସେ ଟିକି ଧୂଳି ଘର ।

ତୁମରି ପରି ଯେତେକ ପିଲା ସବୁରି ମନ ଏକା
ମନ ମଉଜେ ମାରୁଥା କୁଦା ଧୂଳିରେ କାଟି ରେଖା ।

ଧୂଳିରେ ଫୁଟି ରଙ୍ଗ ବେରଙ୍ଗ ଧୂଳିର ସବୁ ଫୁଲ
ଧୂଳିରେ ସଦା ଡେଇଁ ବୁଲୁଥା ପରଜାପତି ତୁଲ ।

ମାଆର କୋଳୁଁ ଧୂଳିମା'କୋଳ ଆରାମ ବେଶି ଲାଗେ
ସେ ଲାଗି ଅବା ହେଉଥା ଲେସି ସେ ଧୂଳି ସାଙ୍ଗେ ସାଙ୍ଗେ ।

ସେ ବୁଝେ ତୁମ ଦିହପା' କଥା ସେ ବୁଝେ ତୁମ ମନ
ତୁମେ ହିଁ ତାର ସଙ୍ଗାଳି ସବୁ ତୁମେ ତା ପ୍ରିୟ ଧନ ।

ଗଦାକୁ ଗଦା କଣ୍ଢେଇ ଦେଲେ ଧୂଳି ହିଁ ମନେ ପଡ଼େ
ବୋଉ କହନ୍ତି ଅସନା ଟୋକା ଧୂଳିରେ ସଦା ଗଡ଼େ ।

ବାପା କହନ୍ତି ନିକଲ ଘରୁ ଚାହିଁ ହେଉନି ଦିହ
ଭିତରେ ତୁମ ମାରଇ ଡାକ ଧୂଳି-ଧୂସର ଦିଅଁ ।



# ବଡ଼ ଠାକୁର କିଏ

ଗଛ ଭିତରେ ଓସ୍ତଗଛ ମାଛ ଭିତରେ ରୋହି
ପିଲା ଭିତରେ ସୁଧୀର ଯିଏ ସଭିଙ୍କି ପାରେ ମୋହି ।

ଫୁଲ ଭିତରେ ପଦ୍ମଫୁଲ ଫଳରେ ସାର ଆମ୍ବ
ମିଠା ଭିତରେ ଆଖୁର ରସ ପିତାରେ ଭୂଇଁ ନିମ୍ବ ।

ମାସ ଭିତରେ ଶ୍ରେଷ୍ଠ ମାଘ ବସନ୍ତ ଋତୁଗଣେ
ଜଳର ମଧ୍ୟେ ଇନ୍ଦ୍ରଜଳ ନୈମିଷ ଯେ ବଣେ ।

ଚାନ୍ଦ ଭିତରେ ଅଶିଣ ଜହ୍ନ
ପତର ମଧ୍ୟେ କଳା ତୁଳସୀ
ଆଳୁଅ ମଧ୍ୟେ ଖରା
ନକ୍ଷତ୍ରେ ଧ୍ରୁବତାରା ।

ପଶୁ ଭିତରେ ଗୋମାତା ସାର
କାଠ ଭିତରେ ଚନ୍ଦନ କାଠ
ପକ୍ଷୀରେ ଶଙ୍ଖଚିଲ
କ୍ଷେତରେ ଧାନବିଲ ।

ତେଜ ଭିତରେ ସୂରୁଯ ତେଜ
ଯାତ୍ରା ମଧ୍ୟେ ତୀର୍ଥ ଯାତ୍ରା
ତୃଣ ଭିତରେ ଦୂବ
ସବୁଠୁଁ ଜାଣ ଶୁଭ ।

ନଈ ଭିତରେ ଗଙ୍ଗାନଈ
କୁଟୁମ୍ବ ମଧ୍ୟେ ସବୁଠୁଁ ବଡ଼
ଦେଉଳେ କୋଣାରକ
ବାପ ମା ମନେରଖ ।

ସେହିରେ ତୁମ ବଡ଼ ଠାକୁର
ତାଙ୍କରି ବରେ ବଡ଼ ଦିନକୁ
ତାଙ୍କରି ପାଦ ସେବ
ବଡ଼ ମଣିଷ ହେବ ।

ଗୋଟିଏ କଥା ରଖିବ ମନେ
ସୁଖ ଦୁଃଖରେ ରୋଗ ଶୋକରେ
ବାପଠୁଁ ବଡ଼ ମାଆ
ତୁମରି ସେହି ସାହା ।

ପୃଥିବୀ ଠାରୁ ମାତା ହିଁ ବଡ଼
ଫୁଲଟି ପରି କଲ୍ୟାଣ ତାଙ୍କ
ଆକାଶ ଠାରୁ ବାପ
ବଡ଼ର ଅଭିଶାପ ।

ଠାକୁର ମଧ୍ୟେ ବଡ଼ ଠାକୁର
ବାତ୍ସଲ୍ୟର ଦୁଇଟି ଧାର
ସେ ବାପ ମାଆ ଦୁହେଁ
ବହେ ସେ ଦୁଇ ମୁହେଁ ।

ମାନିଲେ ଚଳି ତାଙ୍କରି କଥା
ଜିଣିବ ତୁମେ ସାରା ଦୁନିଆ
ହୋଇବ ତୁମେ ବଡ଼
ଜିଣିବ ତୁମେ ଗଡ଼ ।



## ବାହାରେ ବାଃ

ବାହାରେ ବାହାରେ ବାହାରେ ବାଃ,
ସେମେଟା ମୁଢ଼ିକି ଶୀତଳ ଚା !
ହାକୁମ ଭାଇରେ ଏଇଠି ର'
ଦିନରେ ଡାଆଣୀ କାହାଣୀ କ' ।

ଅଥଳ ପାଣିକୁ ଦଦରା ନା',
ବାହାରେ ବାହାରେ ବାହାରେ ବାଃ !

ହାଣ୍ଡିକଳା ଦିହ—ଗଉର ନାଁ,
ଫାଳେ ରୁଟି ଖାଇ ଛକୋଶ ଧାଁ ।
''ଆସ କିଏ ନବ''—''ମୁଁ ହେ ମୁଁ''
ଦବାକୁ ପଡ଼ିଲେ ଯେ ଯହିଁ ଛୁ ।
ଏ ଘର ମାଉସୀ—ସେ ଘର ମା,
ବାହାରେ ବାହାରେ ବାହାରେ ବାଃ ।

ପବନେ ବାଉଁଶ ଡାକଇ କେଁ,
ନୁଖୁରା ଚକୁଳି ଫୁଲଇ ଚେଁ ।
ଜିଭ ଅଠା ଅଠା ମାରୁଚି କି ?
ମହୁ ଗୋଳେଇକି ତୋରାଣି ପି' ।
ନ ପଢ଼ି ପଣ୍ଡିତ ଆପଣା ଛାଁ
ବାହାରେ ବାହାରେ ବାହାରେ ବାଃ ।
ଦୁଃଖରେ ଡାକିବୁ...ସୁଖରେ ଥା',
ଚିନ୍ତା ବିନା ମଥା ମାରୁଚି ଝାଁ ।
ଦିହେ ଯେବେ ରମ୍ପା କୁଣ୍ଡିଆ ଘା',
ବିଛୁଆତି ବଣେ ଶୋଇବୁ ଯାଆ ।
ମୋ ରାଣେ ଟିକେ ଭଲ ତୁ ପାଆ,
ବାହାରେ ବାହାରେ ବାହାରେ ବାଃ ।

ଦୀପ ଶିଖା ପରି ଥିର ତୁ ହ'
ହଜିଲା ସ୍ୱରକୁ ଜିଭରେ ଧ' ।
କାମ ଥାଉଁ ଥାଉଁ ନଅକୁ ଛ,
ପାଟି ବାନ୍ଧି ଦେଇ ଦୁଆରେ ବ' ।
ଭୋଜନରେ ହାତ ଚାଲିଛି ବାଁ,
ବାହାରେ ବାହାରେ ବାହାରେ ବାଃ ।
ଧୋ'ରେ ବାଇଆ ଧୋ'ରେ ଧୋ,
ବାତୁଲା କାନ୍ଦୁଛି ଭୋଓରେ ଭୋ' ।

ପେଏଁକାଲିଟିଏ ହାତରେ ଦେ,
ପୁଣି କେତେ ହସ ନଉଛୁ ନେ ।
ତାକ ଧିନା ଧିନ୍ ତାଧିନ୍ ତା,
ବାହାରେ ବାହାରେ ବାହାରେ ବାଃ ।

❒ ❒

## ସା, ରେ, ଗା, ମା

ସା ରେ ଗା ମା ପା ଧା ନି ସା
ଚୁଡ଼ା ସଙ୍ଗେ ଦହିକୁ ମିଶା ।
ରାଗିଣୀଟି ବଡ଼ ମଜା
ମୁସୁମୁସୁ ଡାଳି ଗଜା ।
ଶୁଣିଲେ ସେ ମିଠା ତାନ
ଗାତୁଁ ସାପ ଡେରେ କାନ ।
ନିଦ ଠଉଁ ବେଶୀ ନିଶା
ସା ରେ ଗା ମା ପା ଧା ନି ସା ।

ଗାଗା ମାମା ପାପା ପାପା
ବୋଉ ଖୁଡ଼ୀ ଦାଦା ବାପା ।
ଶୁଣି ମନ ହୁଏ ଭୋଳ
ଯାଏ ଥମି ପାଟି ଗୋଳ ।
ପୁଷି ସଙ୍ଗେ ଖେଳେ ମୂଷା
ସା ରେ ଗା ମା ପା ଧା ନି ସା ।

❒ ❒

# ବୈଦ୍ୟ କରାମତି

କହିଲେ ରାଜା — ପେଟଟା କିଆଁ
ଦଉଚି ଭାରି ଟାଣି,
ଲେମ୍ବୁ ଦେଇ ଜଲ୍‌ଦି ଆଣ
ଗିଲାସେ ଆଗ ପାଣି ।

ଛାମୁଙ୍କ ପେଟ ଭିତରେ ଆଜି
ଲାଗିଛି ଏ'କି ନାଚ ?
ମନ୍ତ୍ରୀ ବୁଢ଼ା ଶୁଣିଲା ଖାଲି
ଖୁଣ୍ଟୁଚି ଫୁଟ୍‌ଫାଟ ।

ରାଣୀ ମହଲେ ଦାସୀ ମହଲେ
ହାଲୋକ ଗଲା ପଡ଼ି,
ମୟୂର ପରି ମଣିମା ଖାଲି
ଯାଉଅଛନ୍ତି ଗଡ଼ି ।

କହିଲେ ରାଣୀ— ଦାରୋଗା ତୁମେ
ଝପଟି ଆଣ ଖରେ
ସର୍ବରୋଗ— ଶନିଶ୍ଚର
ନିଶ୍ଚେ ଥିବେ ଘରେ ।

ଲଗାମ ଦେଇ ଆଜ୍ଞାବହ
ପିଠିରେ ଦେଉଁ ଛାଟେ,
ପବନ ପରି ଶୂନ୍ୟେ ଘୋଡ଼ା
ଛୁଟିଲା ବାଟେ ବାଟେ ।

ଖୁସିରେ ରାଜା ବରଷା ପାଗେ
କରିଲେ ଦିନେ ମନ,

ନଡ଼ିଆ ସାଥେ ମୁଡ଼ିର ହେଲା
ମଧୁର ଆୟୋଜନ ।

କୋରା ଓ ପେଡ଼ା ଛାଚି ଉଖୁଡ଼ା
ଖାଇଲେ ମହାରାଜା,
ମୁସୁମୁସିଆ ଗରମ ମୁଢ଼ି
ତହିଁକି କେଡ଼େ ମଜା !

ବୈଦ୍ୟଗୁରୁ ଦେଖିଲେ ନାଡ଼ି
ଚାଲିଛି ରୀତିମତ,
ପେଟ ବଥାର ଚିହ୍ନ ସବୁ
ଗାଇଲେ ଧରି ଗୀତ ।

ଚତୁର ଗୁଣୀ ସନ୍ଧାନୀ ତ
ନିରେଖି ଟିକେ ତଳେ,
ଚଅଟ୍ କିନା ରୋଗର ଖିଅ
ଧରିଲେ କଉଶଳେ ।

ଦଶ ବାରଟି ଶୁଖିଲା ମୁଢ଼ି
ବିଛଣା ଦାଢ଼େ ଚାହିଁ,
ଜୀର୍ଣ୍ଣ ଜୀରା ଚୂର୍ଣ୍ଣ ପାନେ
ପାଟିରେ ଦେଲେ ଖୋଇ ।

ଧାରଣା ଯହୁଁ ଖାଇଲା ମେଳ
ଓଷଧି କଲା ଓ ଓ,
ଧନ୍ୟ ଧନ୍ୟ ନଅର ସାରା
ଶୁଭିଲା ଘୋଓ ଘୋଓ ।

ଚାହିଁଲେ ରାଜା ପାତ୍ର ମୁଖେ
ଜିଭକୁ ହାତେ କାଢ଼ି
ଗୁଣିଆଁ ପରି ଗୁଣିଆଁ ସିନା
ଦିଅଇ ବିଷ ଝାଡ଼ି !

ଭିତରୁ ରାଣୀ କହିଲେ ଶୁଣି–
ସିଦ୍ଧ ବୈଦ୍ୟବର
ବଂଶଧର ହୋଇବେ ବୋଧେ
ଧନ୍ୱନ୍ତରୀଙ୍କର ।

ମହାଜନଙ୍କ ବଚନ ଏ ତ
ଅଟଇ ବେଦ ଗାର,
ପଣ୍ଡିତ ଯେ ବୁଦ୍ଧିକୁ ସେ
କରଇ ଆଗୁସାର ।

ମନ୍ତ୍ରୀ ଖୁସି ରଜା ବି ଖୁସି
ରାଣୀଙ୍କ ମନ ଫୁଲେ,
ପୁରସ୍କାର ସୁନାର ହାର
ବୃଦ୍ଧ ଗଳେ ଝୁଲେ ।

ମନ୍ତ୍ର ବଳେ ନ ଯାଇ ଆଉ
ଥାଏ କି ଭୂତ ଗତି ?
ଔଷଧିଠଉଁ ହୋଇଲା ବଡ଼
ବୈଦ୍ୟ କରାମତି ।



# ଆଧ୍ୟାତ୍ମିକ/ଭକ୍ତି କବିତା

## (ଏକ)

ଶ୍ରୀମା ଦେବୀ ଭଗବତୀ ଆସ ଆସ
କର ସତ୍ୟର ଆଲୋକ ପରକାଶ ।
ତୁମେ ପ୍ରକାଶିତ ହୁଅ ପ୍ରତି ମନେ
ଦୟା କର ମହେଶ୍ୱରୀ ବିଶ୍ୱଜନେ ।

ଆସ ଚିନ୍ମୟୀ ଜନନୀ ଆସ ଆସ
ଘନ ଅନ୍ଧାର ଶକତି ହୁଦୁଁ ନାଶ ।
ଯାଉ ଏ ଜୀବନ ତୁମ ଅରଚନେ
ଦୟା କର ମହାକାଳୀ ଦୀନଜନେ ।

ଆସ ମହାଲକ୍ଷ୍ମୀ ଆସ ମହେଶ୍ୱରୀ
ମହା ଉଲ୍ଲାସେ ଅନ୍ତରୁ ଦିଅ ଭରି ।
ଶୂନ୍ୟ ପାତ୍ର କର ପୂର୍ଣ୍ଣ ପ୍ରେମଧନେ
ମହା ଲକ୍ଷ୍ମୀ ଦୟା କର ବିଶ୍ୱଜନେ ।

ମହା ଆଶ୍ୱାସରେ ଦୃଢ଼ ବିଶ୍ୱାସରେ
ସତ୍ୟ ପୂଜା ହେଉ ପ୍ରତି ହୃଦୟରେ ।
ଦିଅ ଶୁଦ୍ଧଜ୍ଞାନ ନାଶି ଘୋର ତମ
ଦେବୀ ମହା ସରସ୍ୱତୀ ନମୋ ନମଃ ।

ଦେବୀ ମୂର୍ତ୍ତିମତୀ ଦିବ୍ୟ ଆଲୋକର
ବିଶ୍ୱ ପ୍ରକୃତିକୁ କର ରୂପାନ୍ତର ।
ଘେନ ଶକ୍ତି ଚତୁଷ୍ଟୟା ମୋର ନତି
ମହା ଦେବୀ କାଳୀ ଲକ୍ଷ୍ମୀ ସରସ୍ୱତୀ ।



## (ଦୁଇ)

କନକୋଜ୍ଜ୍ୱଳ
ଆଲୋକବରଣୀ
ଆଲୋକ ଦିଅ ଗୋ
ଆଲୋକ ଦିଅ—
ଆଲୋକ ରାଇଜେ ଆଲୋକିତ ପଥେ
ରୂପାନ୍ତରିତ କରି ନିଅ ମତେ
ଏତେଦିନେ ଯେବେ ପାଷାଣ ହୃଦୟ
ସରସ କରିଛ
ପରମା ପ୍ରିୟ
ଆଲୋକବରଣୀ ଆଲୋକର ରାଣୀ
ଆଲୋକ ରାଇଜେ
ନିଅ ଗୋ ନିଅ ।
ଆଲୋକବରଣୀ ହେ ଜ୍ୟୋତିର ରାଣୀ
ଶକତି ଦିଅ ଗୋ
ଶକତି ଦିଅ
ତାମସହରଣୀ ଦେବୀ ଚିନ୍ମୟୀ
ମାନବ ଦୁଃଖେ ହେଲେ ମୃଣ୍ମୟୀ
ସକଳେ ଆଲୋକି ସେ ଆଲୋକ ଦେଶେ
ସେ ଆଲୋକ ପଥେ
ନିଅ ଗୋ ନିଅ
କନକୋଜ୍ଜ୍ୱଳ ଆଲୋକବରଣୀ
ଆଲୋକେଶ୍ୱରୀ
ଆଲୋକ ଦିଅ ।



## (ତିନି)

ମା !

ଦୟା କରି ଯେବେ
ଦୁଃଖ ଦେଇଛୁ
ସେହି ମୋ' ପରମ ସୁଖ

ତେବେ କିମ୍ପା ଆଉ
ବୃଥାରେ କହ ମା,
ବିରସ କରିବି ମୁଖ ।

ଦୟା କରି ଯେବେ
ଦେଇଅଛୁ ରୋଗ
ନିରୋଗ ମଣିବି ଦେହ

ଯେତେ ପାପ ତାପ
ଭିତରେ ରହିଛି
ଲୁଚି ତୋ ଗୁପତ ସ୍ନେହ ।

ତୁ ବାଛିଛୁ ଯେବେ
ଜନମ ମରଣ
ମୋର ଉଲ୍ଲାସ ବ୍ୟଥା

ସାଗ୍ରହେ ତାହା
ମାନିନେବି ସବୁ
ନତ କରି ଟିକି ମଥା

ତୁ ଚାହିଁଛୁ ଯାହା
ହେବି ତା ମୂକର
ମନ ସୁଖେ ସବୁ ବରି

ଗୋଡ଼ାଉଥିବି ମୁଁ
ପଛେ ପଛେ ତୋ'ର
ଯେତେ ଗଲେ ଅପସରି ।

ପଥେ ଆସୁ ଯେତେ
ବାଧା ବା ବିପଦ
ସରସ କରିବି ମୁଖ

ମା—ଦୟାକରି ଯେବେ
ଦୁଃଖ ଦେଇଲୁ
ସେ ତ ମୋ' ପରମ ସୁଖ ।

❑ ❑

(ଚାରି)

ଜଗତ-ଜନନୀ ମାଆ
ତୁହି ଏକା ମୋର ସାହା
ତୋ ପଦେ ଅଜାଡ଼ି ଦେଇଚି ମୋହର
ଆପଣାର ଥିଲା ଯାହା
ଜଗତ-ଜନନୀ ମାଆ ।
ଚିହ୍ନିନାହିଁ କିଏ ନିଜକୁ ମୁଁ ମତେ
ନେଉଅଛୁ ଯହିଁ ଚାଲିଛି ସେ ପଥେ
ପଡ଼ିଯିବା ପାଇଁ ଭୟ ମୋର ନାହିଁ
ଧରିଛୁ ଯେଣୁ ମୋ ବାହା
ଜଗତ-ଜନନୀ ମାଆ ।
କ୍ଷଣିକ ମାତର ମମତା ବେଭାର
ଦୁନିଆର ଯେତେ ନିତି କାରବାର
ଧରେ ଯେଉଁ ଡାଳ ହୁଏ ସେ ବି' ଫାଳ
ମୂଳ ଏକା ତୁହି ସାହା
ଜଗତ-ଜନନୀ ମାଆ ।

ଦେଇଅଛୁ ତାକ ଯେବେ ମତେ ଥରେ
ନେଏ ମାଆ ଏବେ ସପ୍ରେମେ ସାଦରେ
ଦୋଷ-ଧୂଳି ଝାଡ଼ି କରୁଣା-ପଣତେ
କୋଳେ ତୋର ଦେଏ ଠାଆ
ଜଗତ-ଜନନୀ ମାଆ ।

□□

(ପାଞ୍ଚ)

ଯେବେ
ଶିଶିର ପଖଳା ସଜ ଗୋଲାପଟି
ଅରପେ ତୁମରି ପାଦେ
ସରସି ଉଠେ ଏ ନିରସ ଜୀବନ
ମା ଗୋ ! ତୁମ ପରସାଦେ ।

ଶ୍ୱେତକମଳଟି ସରାଗେ ତୋଳି ମୁଁ
ଥାପିଦେଲେ ତୁମ କରେ
ତୁମରି ଚେତନା ଲଭିବାର ଆଶେ
ପୁଲକେ ପରାଣ ଥରେ ।

କଅଁଳ ଶିରୀଷ କୁସୁମ ସ୍ତବକ
ସଜାଇଲେ ତୁମ ପାଶେ
ସହସା ତୁମରି ନୀରବ ପ୍ରେରଣା
ଅତଳ ଗଭୀରୁ ଆସେ ।

ସଜ ଫୁଲଝରି ଯତନେ ଆହରି
ଶ୍ରୀପଦେ ଯେବେ ମୁଁ ଦିଏ
କ୍ରୋଧ-ବଇଶାଖୀ କ୍ଷଣକେ ପାଲଟେ
ମୃଦୁ ମଳୟର ସ୍ନେହେ ।

ସୂରୁଯମୁଖୀରେ ଜାଣେ ଗୋ ଚେତନା
ହୁଅଇ ଆଲୋକମୁଖୀ
ତା' ପରାୟେ ମୁହିଁ ଅନିମେଷେ ଚାହିଁ
ହୋଇବି ପରମ ସୁଖୀ ।

ଶକ୍ତି ଦିଅ ଗୋ ଶକ୍ତିଦାୟିନୀ
ରକ୍ତ ଜବାର ହାରେ
ଗନ୍ଧରାଜର ପୂର୍ଣ୍ଣ ସୁଷମା
ଭରିଉଠୁ ଚେତନାରେ ।

ଅତି ମାନସିକ ସିଦ୍ଧି ହେଉ ମୋ
ସ୍ୱର୍ଣ୍ଣ ଚମ୍ପା ଦାନେ
ନବ କରବୀର ଚିନ୍ତା ମଧୁର
ଜାଗୁ ଅନ୍ତର ଛାନେ ।

ଚୈତ୍ୟ ଚେତନା ଶୁଦ୍ଧ କର ମୋ
ପ୍ରଭାତ ମଲ୍ଲିଫୁଲେ
ଦୁଦୁରାର ଗାଢ଼ ତପସ୍ୟାରେ ଟି
ନିଜକୁ ଯେସନେ ଭୁଲେ ।

ଅଶୋକେ ହେଉ ମୋ ଶୋକର ମୋଚନ
ବକୁଳେ ଧରିଯ ଦିଅ
ଶେଫାଳି ପ୍ରଦାନେ ଆସ୍ପୃହା ବନ୍ଧୁ
ହେ ମୋର ପରମପ୍ରିୟ ।

ମୃଦୁଳ ବାସିତ ଟଗର ପରାୟେ
ସୁସ୍ଥିର ହେଉ ମନ
ତୁମରି ଚରଣେ ତୁଳସୀର ଦାନେ
ବନ୍ଧୁ ଭକତିର ଧନ ।

ଅଞ୍ଜଳି ଦାନେ ଫୁଲ ହୃଦ ପରି
ନିଜ ହୃଦ ହେଉ ପ୍ରଭୁ
ଫୁଲ ମାଧମେ ଶ୍ରୀପଦେ ଆକୁତି
ଅରପଣ କରେଁ ସବୁ ।



## (ଛଅ)

ମୁଖର ମୋ ବାଣୀ ମା' ଗୋ !
ହସ୍ତର ସକଳ କର୍ମ
ହେଉ ତୁମ ଜପ ପରି
ସାଧେ ଯେହ୍ନେ ମୁଦ୍ରା ପରି ।

ଭ୍ରମଣର ଚାଲି ହେଉ
ଯଜ୍ଞର ଆହୁତି ପ୍ରାୟେ
ଆଶ୍ରମର ପ୍ରଦକ୍ଷିଣ
ହେଉ ସାତ୍ତ୍ୱିକ ଭୋଜନ ।

ଅଷ୍ଟାଙ୍ଗ ପ୍ରଣାମ ସମ
ଯେତେ ପ୍ରିୟ ଦରବ ମୋ
ଶୟନ ମୋ' ହେଉ ପ୍ରଭୁ
ହେଉ ସେ ତୁମରି ସବୁ ।

ଯେତେ କର୍ମ ପୂଜା ପରି
ସବୁ ସେବା ପଦେ ତୁମ
କରେ ସଦା ଆଚରଣ
ହେଉ ଶେଷେ ସମର୍ପଣ ।

ଶୟନେ ପ୍ରଣାମ କରେଁ
ସୁପ୍ତିରେ ସଚେତ ରହେଁ
ମାଗୋ ! ତୁମ ଶ୍ରୀଚରଣେ
ରହେ ପୁଣି ଜାଗରଣେ ।

ଶ୍ରବଣେ ତୁମରି ବାଣୀ
ନୟନେ ତୁମରି ରୂପ-
ସୁଧା ଢାଳୁ ଅନୁକ୍ଷଣ
ଶୋଭା କରେ ଦରଶନ ।

ହେ ପରମା ପ୍ରିୟତମା
ନୀରବ ନିଶ୍ଚଳ ହୋଇ
ବସ ସଦା ହୃଦାସନେ
ବୁଡ଼ିଥାଏଁ ତୁମ ଧ୍ୟାନେ ।

କରମେ ଜଡ଼ିତ ରହି
ସେହି ପଦ୍ମପାଦେ ମନ
ନିଷ୍ଠାରମ ପରି ଚିତ୍ତେ
ପଡ଼ିଥାଉ ଅବିରତେ ।



## (ସାତ)

ସାଧନ ପୂଜନ		କିଛି ତ ଜାଣେ ନା
		ଜାଣିଅଛି ଖାଲି ତୁହି ମୋ ମାଆ
ତୋହରି ପଣତେ		ଲୁହ ପୋଛି ପୋଛି
		ଜନମେ ଜନମେ ହୋଇଛୁ ସାହା ।

ଗିଆନ ଧିଆନ		ମୋ ସାତ ସପନ
		ନିୟତ ସ୍ମରଣ ନ ପାରେ କରି
ବାନ୍ଧିଅଛି ଆଶା		ତଥାପି ଭେଟିବି
		ଏହି ଦେହେ ନବ ଜନମ ବରି ।

ମାନବ ଜଗତେ		ଦେଖାଦେବେ ଆସି
		ଅତି ମାନବର ନୂତନ ଜାତି
ମାଟିର ଧରଣୀ		ସରଗ ହୋଇବ
		ବିରାଜିବ ଚିର ଆନନ୍ଦ ଶାନ୍ତି ।

କୋଟି ପୁଅ ଝିଅ		ଭେଟିବେ ଯେଦିନ
		ଶ୍ରୀ ଚରଣେ ତୋର ନୁଆଁଇ ମଥା
ଭୁଲିବୁ କି ମାଆ		ଗୋଟିଏ ଝିଅର
		ବିକଳ ହୃଦୟ ଗୋପନ କଥା ।

ମାଆ ଜାଣେ ସାହା–		ଭଜନ ପୂଜନ
		ଜ୍ଞାନ ଧ୍ୟାନ ପଛେ ନ ଥାଉ ଜଣା
କୋଟିକ ଭିତରେ		ଏ ଗୋଟିକ ତୋର
		ସେ ତାଲିକାରେ କି ନ ହେବ ଗଣା !

ଜନମଦାୟିନୀ ଜନନୀ କୃପାରୁ
ବଞ୍ଚିତ କେବେ ମୁଁ ହୋଇବି ନାହିଁ
କୃପା ମୋ ସମ୍ବଳ ଆଶା ଶେଷବଳ
ଆଶାରେ ରହିଛି ସେ ପଥେ ଚାହିଁ ।



## (ଆଠ)

ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା,
ନିତି ନିତି ଶୁଣେ ଯୋଗ ଦରଶନେ
ତଥାପି ତ ଯାଏ ନାହିଁ ମା ।

ଦିଏ ଉପଦେଶ ଚାଲ ସତ ବାଟେ
ନିଜେ କିନ୍ତୁ ଚାଲେ ଅମଡ଼ା ଅବାଟେ
ଧୂଳି ଦିଏ ସିନା ସଜଳ ଆଖିରେ
ସବୁ ଦେଖୁଥାଉ ଚାହିଁ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ପୁତ୍ର ଅପରାଧେ ପିତା ଦିଏ ତଡ଼ି
ରାଜଦ୍ରୋହେ ପ୍ରଜା ଘେନେ ହାତକଡ଼ି
ଯେତେ ଦୋଷ କଲେ କିଛି ତ ଧରୁ ନା
ସ୍ନେହଶୀଳା କ୍ଷମାମୟୀ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ତତେ ନ ଖୋଜିଲେ ମତେ ତୁହି ଚାହୁଁ
ଡାକିବି ବୋଲି ମୁଁ କାନ ଡେରିଥାଉ
ମୁଁ ପାସୋରିଲେ ବି ତୁ ପାସୋରୁ ନାହିଁ

ଚେତାଉ ଯାତନା ଦେଇ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ଏ ଯୁଗେ ଜନନୀ ରୂପେ ଅବତରି
ନିଜେ ସବୁ ଦୁଃଖ ନେଇଅଛୁ ବରି
ନେଏ ମାଆ ଏବେ ହାତ ଧରି ଧରି
ନ ପାରେ ମୁଁ ଏକା ଯାଇ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

□ □

## (ନଅ)

କୁହ !
ପଥ କାହିଁ—
ପଥ କାହିଁ...
ଜନମ ଜନମ କେତେ ବିତିଲାଣି
ଖୋଜି ତାକୁ
ପାଉ ନାହିଁ—
ପଥ କାହିଁ ।
ପଥ କାହିଁ—

ସୃଷ୍ଟିର ଶୁଭ ଦେବ ମୁହୂର୍ତ୍ତେ
ଆସିଛ ଜନନୀ ମୋର
ଟାଣିଅଛି ମୋତେ ତୁମରି ଦିବ୍ୟ
ପ୍ରେମ କରୁଣାର ଡୋର ।
ଯିବି କେଉଁ ପଥେ ସେ ମହାତୀର୍ଥେ
ସେଇ ବାଟ ଦିଅ କହି
ପଥ କାହିଁ— ପଥ କାହିଁ !

ତୁମେ କହିଅଛ ପଥ ନୁହେଁ ଦୂର
ପଡ଼ିଛି ତା ହୃଦୟରେ
ମାତୃ ପୁରତେ ଖୋଲିଲେ ନିଜକୁ
ଖୋଲିବ ତା' ସହଜରେ ।

ଖୋଜି ହେଲେ ସଦା ସେହି ପଥ ଲାଗି
ମିଳିବ ଆପଣାଛାଏଁ
ଶୟନେ ସପନେ ଏ ମନ ଯେସନେ
ତୋର ପାଖେ ପଡ଼ିଥାଏ ।

ନୟନୁ ଫିଟାଇ ମାୟାବନ୍ଧନ
ହେ ମାତଃ ମୁକତିଦାୟୀ
କୁହ
ସେ ପଥ ପଡ଼ିଛି କାହିଁ !



## (ଦଶ)

ଦିବ୍ୟ ଯନ୍ତ୍ର କରିଦେଏ ମତେ
ଦିବ୍ୟ କରମ କରେଁ
ଦିବ୍ୟ ଜନନୀ ଦିବ୍ୟ ଆଲୋକ
ଭରି ଦେ ମୋ ହୃଦୟରେ ।

ତୋହରି କର୍ମ ତୁହି କରୁଥାଉ
ମୁଁ କହେ କରଇ ମୁହିଁ
ମୁହିଁ ରଥ, ତୁହି ରଥୀ ଗୋ ତହିଁର
ମୁଁ ଘର, ଘରଣୀ ତୁହି ।

ମୁହିଁ ଜୀବ, ତୁହି ପରମ ହେ ଦେବ
ଆତ୍ମା ତୁ—ମୁହିଁ ଦେହ

ମୁହିଁ ଯନ୍ତ୍ର, ତୁ ଯନ୍ତ୍ରୀ ତହିଁର
ହୃଦୟ ମୁହିଁ, ତୁ ସ୍ନେହ ।

ମୁହିଁ ଦୀପ, ତୁହି ଶିଖାଟି ତାହାର
ମୁହିଁ ନଦୀ, ତୁହି ଜଳ
ମୁହିଁ ସରୋବର ତୁହି ସରସିଜ
ନିର୍ମଳ ଢଳଢଳ ।

ମୁହିଁ ନାସା, ତୁ ମୋ ଶ୍ୱାସ ପ୍ରଶ୍ୱାସ,
ମୁଁ ନୟନ, ତୁହି ଜ୍ୟୋତି
ସୁନ୍ଦର ମାଳ ସୂତାଖିଅ ମୁହିଁ,
ତୁ କନକ ମଣି ମୋତି ।

ମୁଁ ଫୁଲ ପାଖୁଡ଼ା ତୁହି ତା ଗୋପନ
ମୃଦୁଳ ମଧୁର ବାସ
ତୁହିଁ ମୋର ସ୍ନେହ- ବତ୍ସଳ ପ୍ରଭୁ
ମୁଁ ତୋ ପଦତଳ ଦାସ ।

ସାଧନାର ସାର ଏତିକି ମାତର
ମୁଁ ଛୁଆ, ତୁ ମୋର ମାଆ
ଅଳି ଆରଦୋଳି ସବୁକୁ ସମାଳି
ହେବୁ କଡ଼େ କଡ଼େ ସାହା ।

□ □

## (ଏଗାର)

ଯେଉଁଠି ଥାଏ ଯହିଁ ବା ଯାଏ
ଯୁଆଡ଼େ ଅବା ଚାହେଁ
ମାଆର ହସ ମାଆର ରୂପ
ସବୁଠି ମୁହିଁ ପାଏ ।

ଡର ମୋ ନାହିଁ ଥର ମୋ ନାହିଁ
ଦବକ ଟିକେ ନାହିଁ
ଯୁଆଡ଼େ ଚାହେଁ ମାଆର ଆଖି
ରହିଚି ମୋତେ ଚାହିଁ ।

ମାଆର କୋଳ ଅସଲ ଘର
ଘର ମୋ ନାହିଁ ଲୋଡ଼ା
ପଣଟେ ତାର ପଣତ ମୋର
ରହିଛି ସଦା ଯୋଡ଼ା ।

ଯୁଗେ ଯୁଗେ ମୁଁ ତାହାରି ଶିଶୁ
ସେ ମୋର ଚିର ମାଆ
ମାୟା ମମତା ବାଡ଼କୁ ବତା
ସେହି ମୋ ଏକା ସାହା ।

'ମୀରାମ୍ବିକା' ନାମଟି ଏକା
ସବୁ ନାମର ସାର
ମୁଁ ଜ୍ୟୋତିକଣା ସେ ମହାଜ୍ୟୋତି
ମୁଁ ଟୋପା, ସେ ସାଗର ।

□□

# ପଣ୍ଡିଚେରୀ

ଏହି ପଣ୍ଡିଚେରୀ—
ଏହି ପଣ୍ଡିଚେରୀ—
ଯା'ରେ ମହାମାୟା-
ମହାଲୋକ
ରହିଚି ଘେରି
ଏହି ସେଇ ମହାପୀଠ
ପଣ୍ଡିଚେରୀ ।

ଏଇ ପଣ୍ଡିଚେରୀ ।...
ଦକ୍ଷିଣ ଭାରତର
ସାଗର ତୀରେ
ଆତ୍ମାର ଗାଥା ଶୁଭେ
ଲହରୀ ଗିରେ
ଶୁଣି କି ହେ ପାରୁଛ ତା'
ଶ୍ରବଣ ଡେରି ?
ମହା ଆନନ୍ଦ ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ମଧୁ ବେଦ ଗାନେ ଡେରି କାନ
ଥିଲା ଯେ ଶୋଇ
ଆଜି ହସଇ ସେ ଏ ମାଟିର
ସରଗ ହୋଇ ।

କ୍ରମବିକାଶର ପଥେ
ପଡ଼ିଲା ଛକ
ରଚଇ ସେ ଧରଣୀର
ନବ ଢାଞ୍ଚକ ।
ଅନ୍ତରେ ଅନ୍ତରେ
ବଜାଇ ଭେରୀ—
ଏଇ ପରମ ସୁଖର ଧାମ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଚେତନାର କଥା କହେ
ଯା' ଗୋଡ଼ି ମାଟି
ଶୁଭେ ତୃଣ ତରୁମୁଖେ
ନୀରବ ପାଟି ।
''ସବୁ ତୃଷିତ ଆତ୍ମା ଶୁଣ
ଧରିଯ ଧରି

ବା'ରେ ଏ ପଥେ ଆସିଲେ ନୋହେ
ଅପଥେ ଫେରି ।''
ମହାଜ୍ୟୋତିର କେନ୍ଦ୍ର ଏଇ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଅଶ୍ରୁ ସେ ପୋଛି-
ନିଏ ହସର ସୁଏ
ଫୁଲ ପରି ଖୋଲା ଖୋଲା
ହୃଦୟ ଛୁଏଁ ।

ତାର ଶାନ୍ତ ବାତାବରଣ
ଶାନ୍ତି ଆଣେ
ଯେତେ ରିକ୍ତ ତିକ୍ତ ଶୋକ-
ଦଗ୍‌ଧ ପ୍ରାଣେ ।
ଶୁଭ ଆଶିଷର ଧାରା ଯହିଁ
ପଡ଼ଇ ଝରି
ସେହି ସତ୍ୟର ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...
ସର୍ବଜୟୀ ପ୍ରେମର
କାଉଁରୀ କାଠି
ଛୁଇଁ ଏ ମାଟି
ଘନ ଘୋର ଅନ୍ଧାର
ସଧୀରେ କାଟି–
ଆଜି ଡାକ ଦିଏ ବିଜୟର
ପତାକା ଧରି
ମହା ସାଧନାର କ୍ଷେତ୍ର ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଅଚେତନ ଧରାବାସୀ
ଅଳସ ଛାଡ଼ି
ପୂର୍ଣ୍ଣ ଏ ଯୋଗ ପଥେ
ଆସେ ଯେ ମାଡ଼ି ।

ମହାମାନବର ମହା
ସାଗର ପରି
ଏ ମହା ମିଳନପୀଠେ
ତୋ ନାମ ଧରି
ସଦା
ତୋ ନାମ ସ୍ମରି ।
ଚିରବନ୍ଦିତ ତୀର୍ଥ ଏ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ମହା ଜ୍ୟୋତିର ସମାଧି–
ଏଇ ସାଗର ତୀର
ନାଚେ କୂଳେ କୂଳେ କଳା ଢେଉ
ମାୟାମଦିର ।
ଯେତେ ଜିଜ୍ଞାସା ଉତ୍ତର
ହୋଇ ସତେ ରବି କର
ଉର୍ମିଳ ବାୟୁ ସ୍ରୋତେ
ବୁଲେ ପହଁରି ।
ସେହି ଏ ଶାନ୍ତି ଧାମ
ସେହି ଏ ମୁକ୍ତିଧାମ
ହୃଦୁଁ ଯା' ମଧୁର ନାମ
ନୋହେ ବିସୋରି ।
ସେହି ଏ ପୁଣ୍ୟ ପୀଠ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଚିର ବସନ୍ତ ଶୋଇ ଜ୍ୟୋତି-
ସପନ ଦେଖେ
ଚାରୁ ତପୋବନ ଫୁଲେ ତୋର
କବିତା ଲେଖେ ।
ମୃଦୁ ବିହଗ କୂଜନେ ଶୁଭେ
'ରୂପାନ୍ତର'
"ଶ୍ରୀ ମୀରାମ୍ବିକାୟ ନମଃ"
ଗାଏ ଭ୍ରମର ।
ପଥେ ଆମ୍ର ମୁକୁଳ ମଧୁ
ପଡ଼ଇ ଝରି
ସତେ ପୃଥିବୀର ନନ୍ଦନ
ପଣ୍ଡିଚେରୀ ।
ଏଇ ପଣ୍ଡିଚେରୀ ।...

ଯାହା ନାହିଁ 'ମହାଭାରତେ' ତା
'ନାହିଁ ଭାରତେ'
କ୍ଷିନ୍ନ ମରତେ ଯା' ନାହିଁ ତାହା
ମିଳେ ଏ ପଥେ ।
ଧରି ଆନ୍ତର ଦରପଣ
ହୋଇଛି ଛିଡ଼ା
ଯହିଁ ଝଲସେ ଗଭୀର କ୍ଷତ
ଗୋପନ ପୀଡ଼ା ।

ବିଶ୍ୱର ଗଉରବ
ଭାରତର ସଉରଭ
ତୀର୍ଥର ତୀର୍ଥ ସେ–
ତୁଳନା ତା'ରି
ଏଇ ଧରଣୀ ମଉଡ଼ମଣି
ପଣ୍ଡିଚେରୀ
ଏଇ ପଣ୍ଡିଚେରୀ ।...

ମହା ସୂର୍ଯ୍ୟକରୋଜ୍ଜ୍ୱଳ
ନୂତନ ପଥ
ନିରମିଲେ ପାଳି ଗୁରୁ
କଠୋର ବ୍ରତ ।
ଅମୃତ ଜୀବନର
ଆଲୋକ ଧରି
ଶୋଇଲେ ତୋ କୋଳେ ଘୋର
କଷଣ ବରି ।
ଆଜି କୋଟି କୋଟି ହୃଦୟର
ଶରଣାନନ୍ଦ
ପୁଣ୍ୟ ପ୍ରଭାତୀ 'ଓଁ
ଶ୍ରୀଅରବିନ୍ଦ ।'
ଥାଉଁ ଭୂମି ବାରବାଟି
ସାର୍ଥକ ତୋର ମାଟି
ଏହି ମହା ନବଜ୍ୟୋତି—ମହା
ସମାଧି ଧରି
ଧନ୍ୟ ତୁ ଧନ୍ୟ ରେ
ପଣ୍ଡିଚେରୀ ।
ପଣ୍ଡିଚେରୀ...
ପଣ୍ଡିଚେରୀ...



## ସମୁଦ୍ର ଓ ସମାଧି

ଏକ ପାଶେ ଟାଣେ ମହା ସିନ୍ଧୁର ଉନ୍ମନା ନୀଳ ଜଳ
ଡାକେ ଆରପାଖେ ଧ୍ୟାନ ମଗ୍ନ ଶାନ୍ତ ସମାଧି ତଳ ।
ଏକ ସାଥେ ଶୁଭେ ଦୁଇମୁଖୀ ଡାକ
କାରେ ଏଡ଼ି ଦେଇ ଯିବି କାହା ପାଖ

ପ୍ରାଣର ଦ୍ୱନ୍ଦ ପ୍ରେମର ଜୁଆରେ ହୋଇଉଠେ ଉଚ୍ଛଳ
ଏକାଧାରେ ଡାକେ ଶାନ୍ତ ସମାଧି ସିନ୍ଧୁର ନୀଳ ଜଳ ।

ପ୍ରଭାତୀ ସାନ୍ଧ୍ୟ ସିନ୍ଦୂରିତ ଏ ସିନ୍ଧୁର ଶୋଭାରାଶି
ଜାଗ୍ରତ କରେ ଘୋର ଗରଜନେ ପ୍ରାଣର ଜଡ଼ତା ନାଶି ।
ସେ ପଟେ ସମାଧି ଜ୍ୟୋତି ଭଣ୍ଡାର
ଧୂପର ଗନ୍ଧେ ଡାକେ ବାର ବାର
ବେନିଏ ସତେ କି କୋଟି ଜନମର ଆତ୍ମା ତୃଷାର ଜଳ
ଟାଣେ ରାଜପଥେ ଏପଟେ ସମାଧି ସେପଟେ ସିନ୍ଧୁ ଜଳ ।

ନୀଳ ପାରାବାର ଉର୍ମିଳ ମହାସତ୍ୟର ବେଦଗାନେ
ଦିବ୍ୟାନନ୍ଦ ଆସ୍ୱାଦ ଢାଳେ ପାର୍ଥିବ ମନପ୍ରାଣେ ।
ସଂସାର ବିଷେ ଭାବନାତିକ୍ତ
ସାନ୍ଧ୍ୟ ସମୀର ଶିକର-ସିକ୍ତ
ସକଳ ବେଦନା କ୍ଷଣେ ହରିନିଏ ଉର୍ମିର କଳକଳ
ଡାକେ ଚଲାପଥୁଁ ଶାନ୍ତ ସମାଧି ଅନନ୍ତ ନୀଳ ଜଳ ।
ଏ ପାଖେ ଟାଣଇ ମହା ଚୁମ୍ବକ ମହା ସମାଧିର ଫୁଲ
ଲହରୀ ନୃତ୍ୟେ ନୟନ ହଜିଲେ ପଥଚଲା ହୁଏ ଭୁଲ ।
ଶ୍ରବଣେ ମୁଖର ଉର୍ମିର ଗାନ
ହୃଦେ ସମାଧିର ମହା ଶୂନଶାନ
ଜ୍ୟୋତିର ସାଗରେ ମିଶିଯାଏ ସତେ ଜ୍ୟୋତିର ଅଭିଭାନଳ
ଏ ପଟେ ଟାଣଇ ମହା ଚୁମ୍ବକ ମହା ସେବାତରୁ ତଳ ।

ନିତ୍ୟ ନୂତନା ସନ୍ଧ୍ୟା ଡାକଇ ଡାକେ ଜ୍ୟୋତିର୍ମୁଖୀ ଭୋର
ମହା ସମାଧିର ମହାନ ଗରଭେ ନିମଜ୍ଜେ ଆତ୍ମା ମୋର ।
ସୃଷ୍ଟି ସପନ ମରମେ ଚେତାଇ
ଆଲୋକର ପଥ ଦିଏ ସେ ବତାଇ
ବାରି ହୁଏ ନାହିଁ କେଉଁଠି ସ୍ୱର୍ଗ କେଉଁଠି ଧରଣୀ ତଳ
ସମସ୍ୱରେ ଡାକେ ନୀରବ ସମାଧି ସରବ ସିନ୍ଧୁଜଳ ।

ନିତି ଦେଖି ଦେଖି ତଥାପି ଦୁହିଁଙ୍କି ନ ଦେଖିଲା ପରି ମଣେ
ଗୋଟିଏ ଦିବସ ଅଦରଶନେ ତ କୋଟି ଯୁଗ ପରି ଗଣେ

ଏ ମହା ସମାଧି ଏ ମହା ସାଗର
ଆତ୍ମାର ଜ୍ୟୋତି ଆତ୍ମାର ସ୍ୱର
ହଜିଯାଏ ତହିଁ ବୁଦ୍‌ବୁଦ ମୁହିଁ ନ ପାଇ ଯେ କୂଳ ଥଳ
ଡାକେ ଏକାଧାରେ ଶାନ୍ତ ସମାଧି କାନ୍ତ ସାଗର ଜଳ ।



## ଆଶ୍ରମୁଁ ବିଦାୟ

ବନ୍ଧା ପଡ଼ିଲା ଆତ୍ମା ମୋର ଏ
ମହା ସମାଧିର ପାଶେ
ତେଜି ଆଶ୍ରମ– ଜନ୍ମଭୂମି ମୁଁ
ଯାଏ ଆଜି ପରବାସେ ।

ଜନମ ଜନମ ଚିର ପରିଚିତ
ସତେ କି ଏ ଗୋଡ଼ି ମାଟି
ହୃଦୟେ ହୃଦୟେ ଚାଲେ କଥାଭାଷା
ଶୁଭେ ନାହିଁ ସିନା ପାଟି ।

ଦୂରେ ଅତୀତେ କି ଛାଡ଼ି ଯାଇଥିଲି
ଏହି ଗୃହ ଏହି ପଥ
ସୂର୍ଯ୍ୟର ଘନ ଆଲୋକ ସମାନ
ଲାଗେ ପରା ମତେ ସତ ।

କ୍ରୀଡ଼ା ପ୍ରାନ୍ତର ନୟନ ଭରି ମୁଁ
ଦେଖିଥାଏଁ ଟିକେ ତତେ
ସାନ୍ଧ୍ୟ ଧିଆନ ବନ୍ଧ୍ୟ ବେଦିକା
ମନେ ରଖିବୁ ନା ମତେ ?

ପୋଷିଥିଲି ଆଶା ଯାପିବାରେ ଯୋଗ-
ଜୀବନ ତୋର ଏ ତୀରେ

ହେ ମହାସାଗର ! ସେ ଆଶା ହଜିଲା
ସେହି ଆଶା-ଜଳଧିରେ ।

ନବ ଯୌବନା 'ନନ୍ଦନ' ! ତୋର
ପୁଷ୍ପିତ ପରସାଦେ
ମୁଗଧ ମୁଁ କେତେ— ଛାଡ଼ି ଯିବାକୁ ତ
ନ ଚଳେ ଆଗକୁ ପାଦେ ।

ଏ ଜନମେ ସିନା ହେଲେ ରେ ଚିହ୍ନା
ଆଶ୍ରମ ଯୋଗେ ଆମେ
ହେ ଉଷା ନଗରୀ ! ତୋର ସ୍ମୃତି ସ୍ମରି
ଲାଗିବି ମାଆର କାମେ ।

ପ୍ରାଣପ୍ରିୟ ପାଠୁଁ ବିଦାୟ ନେଇ ମୁଁ
ଯାଉଛି ସୁଦୂରେ ଫେରି
କୃପା କଣା ଖାଲି ଟାଣି ବା ଆଣିବ
ବାହୁଡ଼ା ହୋଇଲେ ଡେରି ।
ଏକଇ ମାଆର ସନ୍ତାନ ସବୁ
ମିଶିଅଛେ ଏକ ଠାଇଁ
ମହା ମିଳନର ମହା ପରିବାରୁ
ବିରହ କେ ଚାହେଁ ଭାଇ ।

ମନ ପ୍ରାଣ ମାୟା ବାନ୍ଧିଛି ଯେଉଁ
ପାର୍ଥିବ ସ୍ନେହପାଶେ
ମାଆ ଭଗବତୀ ଛିନ୍ନ କର ତା
ଦିବ୍ୟ ପ୍ରେମର ହାସେ ।

ସେହି ହସଟିକ ପାଥେୟ ହେଉ ମୋ
ଜଟିଳ ଜୀବନ ପଥେ
ସାଥେ ସାଥେ ଚାଲ ହେ ପ୍ରିୟ ଜନନୀ
ନେଉଅଛ ଯହିଁ ମତେ ।

ଯାଉଛି ଏବେ ରେ 'ଓଡ଼ିଆ-ନିଳୟ'
'ଓଡ଼ିଶା-ନିଳୟେ' ମୁହିଁ
ଶେଷଥର ପାଇଁ ଚମ୍ପକ ଝରା
ଏଇ ତୋ ତୋରଣ ଛୁଇଁ ।



## ଜନ୍ମ ଶତକ

ତୁମେ ଅଖିଳ ବନ୍ଦନୀୟ
ଗୁରୁ ଶ୍ରୀଅରବିନ୍ଦ ଜୟ
ପ୍ରଭୁ ଅତିମାନସର ଜ୍ୟୋତି ଭାସ୍ୱର
ପ୍ରେମର ପ୍ରଣତି ନିଅ ।

ଦିବ୍ୟ ଜୀବନ ଲାଗି
ଅବଚେତନାର ରୁଦ୍ଧ ଦୁଆର
ସଜୋରେ ଦେଇଛ ଭାଙ୍ଗି ।
ଅଶେଷ ଯାତନା ସହି
ତୁମେ ନିଃଶେଷ କରି ନରକର ଲୀଳା
ସରଗ କଲ ଏ ମହୀ ।
ପ୍ରତି ଅନ୍ତର ତନୁ କୃତଜ୍ଞତାର
ଅଶେଷ ପ୍ରଣାମ ନିଅ ।
ତୁମେ ନିଖିଳ ବନ୍ଦନୀୟ...

ଦାହକ ତୁମରି ଯୋଗ
ସେ ମହା ଅନଳେ ଅହରହ ଜଳେ
ମାନବ ସ୍ୱାର୍ଥ ଭୋଗ ।
ଆଉ ନାହିଁ—ରାତି ନାହିଁ
ଚେତନାର ନବ ସୂର୍ଯ୍ୟ ଉଦୟେ
ରହିଛୁ ସକଳେ ଚାହିଁ ।

ବିଶ୍ୱ ପରମ ପ୍ରିୟ
ସେହି
ମହା ଆଲୋକର ଆଲୋକିତ ପଥେ
ଆମକୁ ଆଗେଇ ନିଅ ।

□ □

# କୃପା ଓ ନିର୍ଭର

ମା—
ତୁମେ ଚଳାଇଲ ମତେ
ଚିର ବସନ୍ତ ଚରଣ ଚିହ୍ନ
ଚିତ୍ରିତ ଚାରୁ ପଥେ ।

ତୁମ କୃପା ଯେବେ ନ ଥାନ୍ତା ଚାହିଁ
ବ୍ୟାକୁଳ ହୁଅନ୍ତି ମୁଁ କି ତୁମ ପାଇଁ ?
ତପତ ମରୁରୁ ତୋଳିନେଲ ଶୀତ
ମନ୍ଦାକିନୀର ସ୍ରୋତେ
ମା—
ଆଗ୍ନେୟ ଗିରି ପଥେ
ନାଶି ଘୋର ତାତି ବାହିନେଲ ଜ୍ୟୋତି-
ସଜଳ ଜଳଦ ରଥେ ।

ଘନ ଗରଜନେ ଅକୂଳ ସାଗରେ
ଯାଉଥିଲି ବୁଡ଼ି ଦଦରା ନାବରେ
କାଣ୍ଡାରୀ ତୁମେ କି ସାହସ ଭରେ
ଲଗାଇଲ କୂଳେ ମତେ
ମା—
ତୁମେହିଁ ଆଣିଲ ସତେ !

ଚିର ବସନ୍ତ ଚରଣ ଚିହ୍ନ
ଚିତ୍ରିତ ଚାରୁ ପଥେ ।

ମା—
ତୁମେ ନ ଥିଲେଟି ପାଶେ
ଦିବା ଦିପହରେ ନିରିଜନ ଘରେ
ନିଜ ଛାଇ ମତେ ଗ୍ରାସେ ।

ହେ ଜଗଦ୍ଧାତ୍ରୀ ଦୁର୍ଗତି ହର
ଯୁଦ୍ଧ କ୍ଷେତ୍ରେ ବୀର ମତେ କର
ତୁମ ହାତେ ଦୃଢ଼ ବାହୁ ମୋର ଧର
ନିର୍ଭୟ କରି ତ୍ରାସେ ।

ମା—
ତୁମେ ନ ଥିଲେଟି ପାଶେ
ଦାରୁଣ ଘୂର୍ଣ୍ଣି ତାଣ୍ଡବ ରଚେ
ନିଠୁର ଅଟ୍ଟହାସେ ।

ମା—
ତୁମେ ଥିଲେ ପାଶେ ପାଶେ
ଭରି ଉଠେ ବନ ନିଦାଘ ଜୀବନ
ଶୁଭ୍ର ମାଳତୀ ହାସେ ।
ପଲ୍ଲବି ହୃଦ- ଉଦ୍ୟାନ କଳି
କାମିନୀ ବକୁଳ କେତକୀ ନିଆଳି
ବିଳସେ ମଞ୍ଜୁ ବଞ୍ଜୁଳେ ଢଳି
ମଳୟର ମୃଦୁ ଶ୍ୱାସେ ।

ମା—
ତୁମେ ଥିଲେ ଚଉପାଶେ
ଭରିଉଠେ ଦାବ- ଦଗ୍‌ଧ କାନନ
ନନ୍ଦନ ମଧୁ ହାସେ ।



# ଦେବ ମୁହୂର୍ତ୍ତ

ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା,
ନିତି ନିତି ଶୁଣେ ଯୋଗ ଦରଶନେ
ତଥାପି ତ ଯାଏ ନାହିଁ ମା ।

ଦିଏ ଉପଦେଶ ଚାଲ ସତ ବାଟେ
ନିଜେ ଚାଲି ସଦା ଅମଡ଼ା ଅବାଟେ
ଧୂଳି ଦିଏ ସିନା ସକଳ ଆଖିରେ
ସବୁ ଦେଖୁଥାଉ ଚାହିଁ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ପୁତ୍ର ଅପରାଧେ ପିତା ଦିଏ ତଡ଼ି
ରାଜ-ଦ୍ରୋହେ ପ୍ରଜା ଘେନେ ହାତକଡ଼ି
ଯେତେ ଦୋଷ କଲେ କିଛି ତ ଧରୁନା
ସ୍ନେହଶୀଳା କ୍ଷମାମୟୀ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ତତେ ନ ଖୋଜିଲେ ମତେ ତୁହିଁ ଚାହୁଁ
ଡାକିବି ବୋଲି ମୁଁ କାନ ଡେରିଥାଉ
ମୁଁ ପାସୋରିଲେ ବି ତୁ ପାସୋରୁ ନାହିଁ
ଚେତାଉ ଯାତନା ଦେଇ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

ଏ ଯୁଗେ ଜନନୀ ରୂପେ ଅବତରି
ନିଜେ ସବୁ ଦୁଃଖ ନେଇଅଛୁ ବରି
ନେଏ ମାଆ ଏବେ ହାତ ଧରି ଧରି

ନ ପାରେ ମୁଁ ଏକା ଯାଇ ମା
ପାଦେ ମୁଁ ଚାଲିଲେ ତୋହରି ଆଡ଼କୁ
ଆସୁ ଶହେ ପାଦ ଧାଇଁ ମା ।

□ □

## ସଂକଳ୍ପ

ଆମେ, ଶପଥ କଲୁ ।
ମାଆ ନାମେ ଫୁଲିବୁ
ମାଆକୁ ନ ଭୁଲିବୁ
ମାଆ ପଥେ ଚାଲିବୁ
ଶପଥ କଲୁ ।
ଆମେ, ଶପଥ କଲୁ ।...

ଦିବ୍ୟ ଯା ତାରେ ସବୁ ବରିବୁ
ମୃତ୍ୟୁରେ ଅମୃତ କରିବୁ,
ଆଲୋକିତ ପଥେ ଆମେ ଯାତ୍ରୀ
ଅନ୍ଧାରେ କେବେ ନାହିଁ ଡରିବୁ ।
ଆମେ, ଶପଥ କଲୁ ।...

ନବଯୁଗେ ନବ ପୋଥି ଖୋଲିବୁ
ନବତାନେ ନବଗୀତ ବୋଲିବୁ
ଆସୁ ଯେତେ ଝଡ଼ ଝଞ୍ଜା ଜୀବନେ
ଏକ ମନେ ଏକ ଲୟେ ଚାଲିବୁ ।
ଆମେ ଶପଥ କଲୁ ।...

ସ୍ମରି ମହା ସତ୍ୟର ମନ୍ତ୍ର
ଅଭିଯାନେ ହେବୁ ଆମେ ବିଜୟୀ
ଯନ୍ତ୍ରୀ ସେ ଆମେ ସବୁ ଯନ୍ତ୍ର
ଆମରି ନିୟତି ଆମେ ନିଜେ ହିଁ ।
ଆମେ, ଶପଥ କଲୁ ।...

□ □

## ମାଟି ପାଣି ପବନ

# ମାଟି-କଥା

ମତେ ଯେତେ ଖାଲ କର
ପୂରିଯିବି ମୁଁ ରେ ପୂରିଯିବି
ମତେ ଯେତେ ହାଣ କାଟ
ହସୁଥିବି ମୁଁ ତ ହସୁଥିବି ।

ମତେ ଯେତେ ଖୋଳ ତାଡ଼
ଦୁଃଖ ନାହିଁ ଟିକେ ଦୁଃଖ ନାହିଁ
ମତେ ଯେତେ ମାର ପିଟ
ଆକାଶରେ ଖାଲି ଥାଏ ଚାହିଁ ।

ଶୁଣ ଦୁନିଆରେ ଯେତେ
ହେ ଦୁଇଦିନିଆ କୁଣିଆ ହେ
କାର ନିନ୍ଦା ଅପମାନେ
ନ ଦେଖାଅ ବଡ଼ପଣିଆ ହେ
ଦେଖ ତମ ନିଜ ହାତେ
ନାହିଁ ତମ ନିଜ ଦାନାକନା
ଛଅ ଋତୁ ବାରମାସ
ନିରେଖି ନିରେଖି ମତେ ଅନା ।

ଘନ ବରଷାରେ ମୋର
ଚିକଣ ଶାଗୁଆ ଶାଢ଼ି ଦେଖ
ପୁଣି ଘୋର ଗୀରିଷମେ
ଲଙ୍ଗଳା ଫୁଙ୍ଗୁଳା ରୂପ ଭେକ ।

ଯେଉଁ ଚୋରା ବସନ୍ତରେ
ଗୋରା ତକ ତକ ମୋର ଦିହ

ଆଉ ଶୀତେ ଥାଏ କି ହେ
ତେଡ଼େ ଲୋଭନୀୟ ତେଡ଼େ ପ୍ରିୟ ।

ମୋର ଋତୁଚକ ପରି
ତୁମ ଗ୍ରହ ଚକ ଘୂରୁଥାଏ
ଦୁଃଖ ପରଦା ଉହାଡ଼େ
ସୁଖ ଉଭା ଦେଖ ନିଜ ଛାଏଁ ।

ସଦା ରଖି ସମଭାବ
ଏକ ମଣ ମାନ ଅପମାନ
ଗାଇ ଆଲୋକେ ଅନ୍ଧାରେ
ବିଧାତାର ଶୁଭ ଜୟଗାନ ।

ବେଶି ଖୁସି ହୁଅ ନାହିଁ
ମନଫୁଲାଣିଆ ସ୍ୱର ମେଲି
ଛପି ପଛାଡୁ ଆସୁଛି
ଦୁଃଖ ଖର ସୁଅ ନେବ ଠେଲି ।

ତୁମେ ସନ୍ତାପେ ନୟନୁ
ପୋଛନାହିଁ ଲୁହ ପୋଛନାହିଁ
ଯେଉଁ ହରଷ ଆସୁଛି
ତୁମ ଓଠେ ହସ ଦେବାପାଇଁ ।

ମହା ସମୁଦର ତଳେ
ସପନ ଦେଖେ ମୁଁ ଶୋଇ ଶୋଇ
କେତେ ଯୁଗ ମହାଯୁଗ
ଗଲେଣି ମୋ' ମୁଣ୍ଡେ ପାଦ ଥୋଇ ।

ଅଛି ମୋ' ଭିତରେ ଲୁଚି
ଆକାଶ ପୃଥିବୀ ଇତିହାସ
ସେହି ଗୋପନ ଦୁଆର
ଖୋଲିବ କିଏ ସେ ଆସ ଆସ ।

□ □

# ମାଟିଦୀପ

କହେ ଛୋଟ ମାଟିଦୀପ
ରଖ ମତେ ରୁଖାପରେ
ଢାଳ ତେଲ-ତେଜ ବତି
ଜଳିବି ମୁଁ ଘରେ ଘରେ ।

ଛୋଟ ହେଲେ ହେଲା କିବା
ଡରେ ମତେ ଅନ୍ଧକାର
ଛୋଟ ହେଲେ ହେଲା କିସ
ଝରେ ମୋଠୁଁ ଜ୍ୟୋତିଧାର ।

ଆଲୁଅ ମୋ' ଆତ୍ମା ପରି
କି ସୁନ୍ଦର ତେଜୀୟାନ
ସ୍ଥିର ଶିଖା ଦେଖି ମୋର
କର ତୁମେ ସ୍ଥିର ଧ୍ୟାନ ।

ଅଙ୍କାବଙ୍କା ବାଟେ ଗଲେ
ନ ମିଳଇ ଶେଷେ କିଛି
ଚିନ୍ତାଦକ-ବିଭ୍ରୁଚିନ୍ତା
ନ କର ହେ ମିଛି ମିଛି ।

ଦୂବଘାସେ ଫୁଲ ଖସେ
ସେ ଶବଦ ତାଙ୍କୁ ଜଣା
'ଭଗବାନ' 'ଭଗବାନ'
ରଡ଼ି ଛାଡ଼ି ବୃଥା ବଣା ।

ସଳିତାର ଆୟୁ ମୋର
ଯାଏ ବୋଲି ବେଗେ ପୋଡ଼ି
ପରମାତ୍ମା ଆଲୋକେ ମୁଁ
ଶିଖା ଆତ୍ମା ଦିଏ ଯୋଡ଼ି ।

ଦେହ ସିନା କଳା ମୋର
ମନ କେଡ଼େ ଚକ ଚକ
ବେଶଭୂଷା ସୁଗୁଣର
ଚିହ୍ନ ନୁହେଁ ମନେ ରଖ ।

ନିଷ୍ଠାସହ ଧରିଥାଏଁ
ଢାବୁଡ଼ି ମୋ ଧରିଯରେ
ଏକଲୟେ ଚାହିଁ ଚାହିଁ
ସକାଳର ସୂର୍ଯ୍ୟରେ

ତୁହା ତୁହା ଚୋରା ବାଆ
ଛୁଇଁ ମତେ ଯାଏ ଚାଲି
ଜିଦିଖୋର ଯୋଗୀ ପରି
ବସିଥାଏ ଧ୍ୟାନେ ଖାଲି ।

ଭୁଲେନାହିଁ ସେବା କେବେ
ଭୁଲେ ନାହିଁ ବିଭୁ ନାମ
ଅନ୍ଧାରେ ମୁଁ ବୁଡ଼ି ସଦା
ଆଲୋକର କରେ କାମ ।



# ସର୍ବଂସହା ମାଟି

ସରବ ସହଣୀ ମାଟି
ସବୁରି ଉପରେ ସେନେହ ତୋହର
ସମାନେ ଦେଉଛୁ ବାଣ୍ଟି ।

ତୋର ମିଠାପାଣି ତୋ' ଧୀର ପବନ
ଦେହେ ମୋ ଦେଇଛି ବଳ
ଶକତି ଦେଇଛି ତୃପତି ଦେଇଛି
ତୋ ଗଛ ଲତାର ଫଳ ।

ସବୁଜ ଘାସର କଅଁଳ ବିଛଣା
ଦିଏ କି ଆରାମ ମତେ
ମାଆ ପରି ମୋର ଅଳି ଅରଦଳି
କେତେ ନ ସହିଛୁ ସତେ ।

ଦେହ ଦୁଃଖ ପାଇଁ ସାଇତିଛୁ କେତେ
ଚେରମୂଳି ଗଛ ଲତା
ମନ ସୁଖ ଲାଗି ନଈ ସମୁଦ୍ରରେ
ଭରିଅଛୁ ହସ କଥା ।

ବୁକୁ ମୋ ଫୁଲାଏ ଆଖି ମୋ ଭୁଲାଏ
ତୋ' ବଣ ପକ୍ଷୀର ଡାକ
ସରଗ ଡାକିଲେ ମନ ବଳେ ନାହିଁ
ଛାଡ଼ିବାକୁ ତୋର କାଖ ।

ଜନମ କାଳୁ ଯେ ଦେହେ ତୋ ଆଘାତ
କେତେ ନ ଦେଇଛି ମୁହିଁ
ନିଜ ଛୁଆ ବୋଲି ସବୁ ଦୋଷ ସିନା
କ୍ଷମିଅଛୁ ଏକା ତୁହି ।

ଯେତେ ରାଗ ରୋଷ କରେ ତୋହ ପାଖେ
ମାଆ ବୋଲି ଯାଉ ଭୁଲି
କେତେ ତପ କରି ଏଇ ଜନମରେ
ଆସିଛି ତୋ' ଦେଶେବୁଲି ।

ଅମାପ ଧରିଯୁଁ ଦେଏ ଟିକେ ମତେ
ନିଦା ହେଉ ମୋର ଛାତି
ନିଜେ ଦୁଃଖ ସହି ଏ ଜଗତ ପାଇଁ
ଲାଗିପଡ଼େ ଦିନ ରାତି ।

ଦିହ ସିନା ତୋର ପାହାଡ଼ ପଥର
କଅଁଳ ପତର ପ୍ରାଣ
ଦୁଃଖ ଦଡ଼ମଡ଼ି ସହିବାକୁ ମତେ
କରି ଦେ ତୋ ପରି ଟାଣ ।

ତୋର ମୁକତିରେ ମୋର ମୁକତି ମା
ତୋର ହସେ ମୋର ହସ
ତୋହରି ଅନ୍ତର ଆଦେଶେ ଚଳେ ମୁଁ
ଘୋଷି ତୋର ମହାଯଶ ।

ଚିର ଦୁଃଖର ତୋ ପାହାନ୍ତି ଅନ୍ଧାର
ରାତି ଆସୁଅଛି ପାହି
ସେ ନୂଆ ସପନେ ଫୁଲେ ମୁଁ ଆନନ୍ଦେ
ଜୟଗାନ ତୋର ଗାଇ ।

ତୁହି ଦେବଭୂମି ତୁହି ବୀରଭୂମି
ତୁହି ମୋ ଭାରତ ମାଆ
ତୋର ପାଦଧୂଳି ମୁଣ୍ଡେ ହୋଇ ବୋଳି
ରଖିବି ତୋହର ନାଆଁ ।

ଚେତନ-ଗରଭା-ମାଟି
କେଉଁଠି ହଜିଛି ଖୋଜି ଦେଏ ମୋର
ଚେତନାର ଚାବିକାଠି ।

□ □

# ମାଟି-ଶେଯ

ପହିଲେ ଶୋଇଲି ମାଟି ପରେ
ମାଟିର ବିଛଣା ମାଟି ଘରେ ।
କି ଚୁମ୍ବକ ଥିଲା ତା'ର ଦେହେ
ଟାଣିନେଲା ମତେ ଅତି ସ୍ନେହେ ।
ଦୁଇ ପ୍ରାଣେ ଆମ ହେଲା ଯାହା
ମନେ ତ ପଡ଼େ ଆଜି ତାହା ।
କାଳର ପରଦା ଧୀରେ ଚିରି
ଆସେ କଇଶୋର ଥିରି ଥିରି ।

ମାଆ କହେ "ପଢ଼ ବାପ, ଧନ"
ପଢ଼ିଆରେ ତେଣେ ବୁଲେ ମନ ।
ଧମକରେ ସିନା ପଢ଼େ ପାଠ
ଗୋଡ଼ ଖୋଜୁଥାଏ ଚଲା ବାଟ ।
ଚାଟଶାଳୀ ଘର ଛାଟ ମାରେ
ପାଠ ହଜିଯାଏ ଲୁହ ଧାରେ ।
ଡାକେ ବଣପକ୍ଷୀ ଡାକେ ମାଟି
ଲେଖା ପଢ଼ା ଏକ ମହା ଘାଟି ।
ଯହୁଁ ବଡ଼ ହେଲି ଆଉ ଟିକେ
ତା ପାଖେ ନିଜକୁ ନିଜେ ବିକେ ।
ଘର କଣ ଲାଗେ ଶୁଖା ଲୁଖା
ବାହାର ଜଗତ କି ହାଲୁକା !
କାନ୍ଥ ନାହିଁ କାହିଁ ବାଡ଼ ନାହିଁ
ମୁକୁଳା ପବନ ସାଇଁ ସାଇଁ ।
ଉପର ଦିଶଇ କେଡ଼େ ଭଲ
ଆକାଶ ଚାନ୍ଦୁଆ ଝଲମଲ ।
ନୂଆ ଛନ ଛନ ନୀଳ ଘାସ
କଅଁଳ ଶେଯ ତା କି ଉଶ୍ୱାସ ।
ନରମ ଗାଲିଚା ମାଟିର ସେ
କେଡ଼େ ଆରାମେ ମୁଁ ତହିଁ ବସେ ।
ମାଟିଶେଯ କେଡ଼େ ପରିଷ୍କାର
ମେଘହାତ ବାଜି ବାର ବାର ।
ଖରା ଶୁଖାଏ ତା ଖର ତେଜେ
ନାହିଁ ମଳି ଧୂଳି ମାଟି ଶେଯେ ।
ପବନ ଦିଏ ତା ଝାଡ଼ି ଝୁଡ଼ି
ପାଲିସି ହୁଏ ସେ ଘାସେ ବୁଡ଼ି ।
ସୁଖେ ଶୁଏ ଧନୀ ଗଦି ପରେ
ମାଟି ଶେଯ ପ୍ରତି ଘରେ ଘରେ ।

ଯେତେ ଶୁଅ ତୂଳା   ଶେଯ କରି
ଭୂଇଁଶେଯେ କେହି   ନୁହେଁ ସରି ।
ତା ବିଜୁଳି ତେଜ   ଜାଣ କିହେ
ଦେହୁଁ ସେ ଉତ୍ତାପ   ଟାଣି ନିଏ ।
ସବୁଜ କମ୍ବଳ   ତାର ଝାଡ଼ି
ଶୋଇଲେ ଅଳସ   ଯାଏ ଛାଡ଼ି ।
ଖେଳି ଖେଳି ତହିଁ   ହେଲେ ଟାଣ
ଯୋଦ୍ଧା କରି ହେବ   ମୋର ପ୍ରାଣ ।
ଏଇ ନୂଆ ଯୁଗ   ବଡ଼ି ଭୋର୍‌
ସରଗ କରିବି   ମାଟି ମୋର ।

□□

## ଜନମ ମାଟି

ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ   ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।
ମାଆ ତହୁଁ ପ୍ରିୟ   ସେ ଜନମ ମାଟି
ସୁନାର ଫସଲ   ପଡ଼େ ଯହିଁ ଫାଟି
ସ୍ମୃତିକି ଯାର   ମନେ ଘୋରି ବାଟି
ପାହୁକ ପରାୟେ ପାଅରେ
ସରବେ ମାନିବ   ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଗଢ଼ିଲା ଯେ ପିଣ୍ଡ   ଗଢ଼ିଲା ଯେ ମନ
ଦେହେ ଦେଲା ବଳ   ହୃଦେ ସଦଜ୍ଞାନ
ତା'ର ପଦ ତଳେ   ଲଗାଇ ଧିଆନ

ତାହାରି ବନ୍ଦନା ଗାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଯା ସଞ୍ଜ ସକାଳ ଯା'ର ଦିନ ରାତି
କୁଆଁର ପୂନିଅଁ ଫଗୁଣ ପାହାନ୍ତି
ଯା'ର ହସ କାନ୍ଦ ସ୍ନେହ ସୁଖ ଶାନ୍ତି
କୋଟି କବିତାରେ ଗାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ମାଆ ସିନା ଆମ ଗରଭ ଧାରିଣୀ
ଜନମ ମାଟି ମା ସଙ୍କଟ ତାରିଣୀ
ସେ ଘୋର ଅଜ୍ଞାନ ମୁକତି କାରିଣୀ
ତାହାରି ଆଦେଶେ ଯାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଯେଉଁ ମହାଯୁଗ ଆସେ ଅବତରି
କଠୋର ଶପଥେ ନିଅ ତାରେ ବରି
ସେହି ଶୁଭ ବେଳ ଏବେ ଅନୁକୂଳ
ସେ ନୂଆ ଆଲୋକେ ଚାହିଁରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ ।

ଆଜି ଯିଏ ସବୁ  ଅଛ ସାନ ସାନ
ନୂଆ ପୃଥିବୀରେ  ଦେବ ନୂଆ ଦାନ
ନବ ଯୁଗ କାନେ  ମହିମା ଘୋଷି ତା
ବିଜୟର ଭେରୀ ବାଅରେ
ଯିଏ ବା ଯେଉଁଠି ଥାଅରେ
ସରବେ ମାନିବ  ନିଜର ମାଟିକୁ
ନିଜେ କେଡ଼େ ଭଲ ପାଅରେ !



## ମାଟିର ମଣିଷ

ମାଟିର ମଣିଷ  ଏଇ ମାଟି ପରି ଟାଣ
ବଞ୍ଚାଇଛି ଯିଏ  ସାରା ପୃଥିବୀର ପ୍ରାଣ ।

ଦିନ ରାତି ଯା'ର  ମାଟି ସାଥେ କାରବାର
ପାଦ ତଳେ ତା'ର  କରେ ମୁଁ ନମସ୍କାର ।

ମାଟିର ମଣିଷ  ମାଟି ପରି ତାର ଦେହ
ଉପରେ ନୁଖୁରା  ଭିତରେ ରସାଳ ସ୍ନେହ ।

ଖର ଗୀରିଷମେ  ନିଦା ମାଟି କରି ଚୂନା
ବାଟି ବାଟି ବିଲେ  ଫଳାଏ ଫସଲ ସୁନା ।

ମାଟିର ମଣିଷ  ଢାଳି ତାର ଦେହ ମନ
ମାଟିର ଅମାରୁ  କାଢ଼େ ଭଳି ଭଳି ଅନ୍ନ ।

ମାଟି ତା ସପନ  ମାଟି ଭାଇ ବନ୍ଧୁ ସାଥୀ
ମାଟି ସାଥେ ତା'ର  କଟିଯାଏ ଦିନ ରାତି ।

ମାଟିର ମଣିଷ ମାଟି ତାର ଜପମାଳି
ଲାଗିଥାଏ ତହିଁ ଲୁହ ଲହୁ ସବୁ ଢାଳି ।

ଯେତେ ହସକାନ୍ଦ ଯେତେ ସୁଖଦୁଃଖ ଭାଇ
ଯେତେ ଚିନ୍ତାଦନ୍ଦ ସବୁ ତା'ର ମାଟି ପାଇଁ ।

ମାଟିର ମଣିଷ ନ ଡରେ ବରଷା ଝଡ଼
ମାଟି ସାଥେ ଲଢ଼ି ଛାତି ତାର ଭାରି ଦଢ଼ ।

ପାଦେ ତା ଜୁହାରେ ପାହାନ୍ତି ପଉଷ ରାତି
ଆରତି କରଇ ବଇଶାଖ ଝାଞ୍ଜି ତାତି ।

ମାଟି ସଙ୍ଗେ ତାର ହସ ଖେଳ କଥାଭାଷା
ମାଟି ତା' ଜୀବନ ମାଟି ତା ଭରସା ଆଶା ।

ଏଇ ମାଟି ପାଣି ପବନ ଯାହାର ପ୍ରିୟ
ଟାଣ ରଖିପାରେ ଶେଷଯାଏ ସେହି ଦିହ ।

ମାଟିର ମଣିଷ ମାଟିର ସଜୀବ ଦିଅଁ
ବଡ଼ ହେବା ପାଇଁ ତାହାରି ନମୁନା ନିଅ ।

ସଭିଏ ହୋଇଲେ ସହଣିକ ତାହା ପରି
ହସିବ ଏ ମାଟି ସରଗର ଶିରୀ ଧରି ।

ମାଟି ମଣିଷର ମାଟି ହିଁ ବୁଝଇ ବ୍ୟଥା
ମୁହେଁ ତାଙ୍କ ଲୁଚି କଥା କହେ ସରଳତା ।

ହୃଦୟ ଆମର ଖୋଲିଦେଲେ ତାହାପରି
ବିଭୁର କରୁଣା ଉପରୁ ଆସିବ ଝରି ।

□□

# ମଣିଷ ଓ ମାଟି

ମାଟିରେ ପଡ଼ିଲି ମାଟିରେ ଗଡ଼ିଲି
ଖାଇଲି ମାଟି
ମାଟିରେ ହସିଲି ମାଟିରେ କାନ୍ଦିଲି
ମେଲାଇ ପାଟି ।

ମାଟିରେ ପହିଲେ ପାଦ ପକାଇ ମୁଁ
ଚାଲିଲି ବାଟ
ମାଟିର ସିଲଟ ମାଟିର ଖଡ଼ିରେ
ପଢ଼ିଲି ପାଠ ।

ମାଟି ବୋଳି ହୋଇ ଖେଳିଲି ତିଆରି
ମାଟିର ଘର
ମାଟି ଖେଳନାରେ ସାଙ୍ଗସାଥୀ ପ୍ରାୟେ
କଲି ଆଦର ।

ମାଟି ମୋର ବନ୍ଧୁ ମାଟି ମୋର ବାପ
ମାଟି ମୋ ମାଆ
ସୁଖେ ଅବା ଦୁଃଖେ ରୋଗେଭୋଗେଯୋଗେ
ସେହି ତ ସାହା ।

ଯେଉଁ ମାଟି ଗଛ ଧରଇ ଅମର
ଆତ୍ମାର ଫୁଲ
ସେ ଦେହେ ଜନମ ନେବାପାଇଁ ଦେବେ
ସଦା ବ୍ୟାକୁଳ ।

ମାଟିର ପୋଷାକ ଦେବାରେ ପାଲଟି
ଇଚ୍ଛା କେ କରେ

ଜୀବ ଆତ୍ମା ପରି ଦୁହେଁ ମିଶି ଛନ୍ଦା
ଗୋଟିଏ ଡୋରେ ।

କିଏ ଲଗାଇଛି ଜୀବନ-କୋଇପେ
ମାଟିର ଚାବି
ଜନମ-ମରଣ ଫିଟିବା-ପଡ଼ିବା
ତାଜୁବ-ଭାବି ।

ମାଟି ସତ୍ୟ ପରେ ମହା ସତ୍ୟ ଏକ
ରହିଛି ଲୁଚି
ଯେ ଆଲୋକ ପାଶେ ମାଟିର ସ୍ୱଭାବ
ଯାଏଟି ଘୁଞ୍ଚି ।

ଦିଏ ସେ ଚେତନା ଏ ମର ଜୀବନେ
ଅମର କରି
ପାଇବା ତା ଆମେ ଗଲେ ସଚେତନେ
ସେ ବାଟ ଧରି ।

□ □

# ପାଣି

ଚେତନା ପାହାଚେ ଉପରେ ଉଠି
ଏଇ ମେଘ ପରି ଆସିବା ଛୁଟି ।
ରୂପାନ୍ତର କରି ସ୍ୱରୂପ ଆମେ
ସାହା ହେବା ଟିକେ ବିଧୁର କାମେ ।

ପାଣିରେ ପାଣି
ପାଣି କହେ ମତେ କିଏ ନ ଜାଣି ?

ପବନେ ବୁଲେ ସେ ପବନେ ବୁଲେ
ନୀଳ ଆକାଶର ବଉଦେ ଝୁଲେ ।

ମାଟି ବି ପାରେ ସେ    ତାତି ବି ପାରେ
ନିଆଁ ବି ଧରେ ସେ    ଡିଆଁ ବି ମାରେ ।

ବଢ଼ି ବି ପାରେ ସେ    ଉଡ଼ି ବି ପାରେ
କାହାକୁ ମାରେ ତ    କାହାକୁ ତାରେ ।

ବେଳେକେ ଅଥୟ    ବେଳେକେ ଧୀର
ପ୍ରଳୟ ଆଣେ ସେ    ଟେକିଲେ ଶିର ।

'ଜୀବନ' ନାଆଁ ତା    ଅଜଣା କାରେ
ବଞ୍ଚେ ଏ ପୃଥିବୀ    ପିଇ ଯେ ତାରେ ।

ବେଳେ ଯଦି ପ୍ରାଣୀ    ପାଣି ନ ପାଏ
ଅଚାନକେ ପରା    ଜୀବନ ଯାଏ ।

ରକତ ଯେସନେ    ଦିହରେ ଲୋଡ଼ା
ପାଣି ସେଇପରି    ପରାଣେ ଯୋଡ଼ା ।

ପାଣିରୁ ଏ ମାଟି    ଜଗତ ଜାତ
ଦେହ ଯେ ମେଲିଛି    ଦରିଆ ସାତ ।

ତିନିଭାଗେ ପାଣି    ଚଉଠେ ମାଟି
ମୂଳୁ ଦେଇଛନ୍ତି    ବିଧାତା ବାଣ୍ଟି ।

ଜଳର ରାଜୁତି    କେତେରେ ବୁଝ
ଜଳ-ଦେବତାରେ    ପହିଲେ ପୂଜ ।

ଅଛି ତାର ପୀଠ    ଭଳି କି ଭଳି
ସୁଗୁଣ ଯେତେ ତା    ନ ହୁଏ କଳି ।

ତପତ ଝରଣା    'କେଦାର କୁଣ୍ଡ'
ଯାର ପାଶେ ରୋଗୀ    ନିୟତ ଭୁଣ୍ଡ ।

ଗୟା ଗୋଦାବରୀ    ତ୍ରିବେଣୀ ଧାର
ତୀର୍ଥ ଜଳ ଏକା    ଜଳର ସାର ।

ପାଣିରେ ଛାଡ଼ିଲେ    ରୋଗାଏ ଦିହ
କିଛି ନ ମିଳିଲେ    ପାଣିକି ପିଅ ।

ଶୋଷରେ ମରତ    ଅମୃତ ସିଏ
ଦେହେ ମନେ କେଡ଼େ    ଆରାମ ଦିଏ ।

ସବୁଠିଁ ଘର ତା    ସହଜେ ମିଳେ
ସରଗ ମରତ    ପାତାଳ ତଳେ ।

ଖାରିଆ ଲୁଣିଆ    ମିଠା କେ ଅତି
କପାଳେ ମାରି କେ    ଲଭେ ସୁଗତି ।

ପାହାଡ଼ର ଝର    ଜଳ କି ମିଠା
ଲୁହା କଳ ପାଣି    ପାଣିର ସିଠା ।

ପ୍ରକୃତିର ଝର    ବିଜ୍ଞାନ ଝର
ରୋଗନାଶୀ ଜଣେ    ରୋଗର ଘର ।

ଜାହ୍ନବୀ ଝରଣା    ଜଳ-ପ୍ରପାତ
ଅସୁମାରି ନଈ    ଦରିଆ ସାତ ।

କୋଟି କୋଟି କୂଅ    ପୋଖରୀ ଚୁଆ
ଦରପଣ ପରି    ହୋଇଚି ଥୁଆ ।

ଭୂଇଁ ଛାଡ଼ି ଶୂନ୍ୟେ    ଉଠି ସେ ନୀର
ଦେଖାଏ ଆମରେ    ତା' ରୂପାନ୍ତର ।

ଆକୁଳେ ଡାକିଲେ    ଆଶାୟୀ ଚାଷୀ
କ୍ଷଣକେ ସେ ମହୀ    ଦିଏ ଉଶ୍ୱାସୀ ।

ଟୋପା ଟୋପା ପାଣି    ଏକାଠି ମିଳି,
ସପତ ସାଗର    ଦିଅନ୍ତି ତୋଳି ।

ବହୁ ହୃଦୟର    ତପସ୍ୟା ବଳେ
ସରଗ ଓହ୍ଲାଏ    ମରତ ତଳେ ।



## ଝରଣା

ଝରି ଝରି ଥରି ଥରି
କାହିଁ ଯାଉ ବୋହୁଚି
ବନ ପଥ କାନେ କାନେ
କେତେ କଥା କହୁଚି ।

ଝୁମୁ ଝୁମୁ ନୂପୁର ତୋ
ଯେବେ ବାଜି ଉଠଇ
ନିଦ ମଳ ମଳ ଆଖେ
ନଇଧାର ଛୁଟଇ ।

ଢଳ ଢଳ ଶିରୀ ତୋର
କାହିଁ ନୋହେ ତୁଳି ଲୋ
ତତେ ଦେଖି ବେଙ୍ଗରାଣୀ
ଦିଏ ହୁଳହୁଳି ଲୋ ।

ଗଛ ଲତା ହସେ ତୁହି
ପାଦ ଦଉ ଦଉଟି
ଝରି ଝରି ଥରି ଥରି
କାହିଁ ଯାଉ ବୋହୂଟି ।

ଛନ ଛନ ମନ ତୋର
କନ କନ ଚାହାଣି
ଝର ଝର ତାନେ କହୁ
କି ମଧୁର କାହାଣୀ ।

ନାହିଁ ମନେ ଦୁଃଖ ତାପ
ସଦା ହସ ହସଟି
ଢାଳିଛି ତୋ କଣ୍ଠେ ବିହି
କି ମଧୁର ରସଟି ।

ସେହି ମହୁ ଚାଖିବାକୁ
ଥାଏ ମାଟି ଅନେଇ
ଅଳିଅଳୀ ଝିଅ ଚାହାଁ
ମେଘ ଆସେ ଘନେଇ ।

ତୋର ଗୀତ ଶୁଣିବାରେ
କାନ ଡେରେ ପଥର ।

କାହା ବୋହୂ—ଜାଣୁ ତୁହି
କି ମୋହନ ମନ୍ତର ।

ହସ ଖୁସି ଯାଏ ମରି
କରି ଘର କରଣା
ମହାନନ୍ଦ ମହାଛନ୍ଦ
ସପନ ମୋ ଝରଣା ।

ତୋର ଗୁଣ ଶିଖି ଏବେ
ସୁଖେ ଦିନ ନେବି ରେ
ନିଜ ହସ ନିଜ ଖୁସି
ଆନ ମନେ ଦେବି ରେ ।

ଏଡ଼ି କଣ୍ଟା ଖାଲ ଢିପ
ଦୁଃଖ ଶୋକ ଛାଟରେ
ତୋ ପରିକା ଧାଇଁବି ମୁଁ
ନିଜେ ନିଜ ବାଟରେ ।

କହ ଆଉ ପଦେ କଥା
ନୋହି ତରତର ଲୋ
ଆଣିଲୁ ଏ ଖୁସି କାହୁଁ
ପାଇ କାହା ବର ଲୋ ।

ତୁ ଯାଉନୁ କାଳ କାଳ
ଦରିଆର ଉଆସେ
ଯେ ସୁଯୋଗ ଏ ଜୀବନେ
ମୋ ପାଇଁ ତ ନୂଆ ସେ ।

ଧାଇଁଚି ମୁଁ ଅନ୍ତରେ କା
ନିଶବଦ ଡାକରେ
ଖେଳେ ତୋର ବ୍ୟାକୁଳତା
ମୋର ଚାରିପାଖରେ ।

ନିରିମଳ ଦେହ ତୋର
ମନ ନିରିମଳ ତ
ମିଶିଯିବୁ ସିନ୍ଧୁ କୋଳେ
ହସି କଳ କଳ ତ ।

ବିନ୍ଧୁ ସାଙ୍ଗେ ଭେଟ ଲାଗି
ବହୁ ବାଧା ମୋ ବାଟେ
ଘନ ଘନ ମାରେ ହାତ
ସେ ମନ୍ଦିର କବାଟେ ।

❑ ❑

## ନଈ

ନଈରେ ନଈ
କେଉଁଆଡ଼େ କହ
ଯାଉଚୁ ବହି
ଯାଉଚୁ ବହି ।

କେଡ଼େ ମିଠା ଆହା
ରୂପ ତାର ପରି
ଲହଡ଼ି ଭିତରେ

କି ନିରିମଳ
ତୋ ସୁଅ ଜଳ
କି ଗୀତ ଗାଇ
ଯାଉଚୁ ଧାଇଁ

କେଉଁ ରାଇଜକୁ

କହ ତ ନଈ ?

ଚିକି ଚିକି ତୋଫା
ତୋର ଦରପଣେ
ସରଗେ ଥାଇଁ ସେ

ଜହ୍ନ ଆଲୁଅ
ନିରେଖି ମୁହଁ
ଅଧୀର ହୁଏ
ଆସିବା ପାଇଁ

କାହିଁକି ତୋ ପାଖୁ

କହ ରେ ନଈ ।

କି ଖୁସି ହୁଅନ୍ତି	ଦେଖିଲେ ତତେ
ମଣିଷଠୁ ଗଛ	ବୁରୁଛ ଯେତେ
ବଞ୍ଚାଇଛୁ ଫଳ	ଫସଲ କ୍ଷେତେ
ଆହାର ଦେଇ
ଅମୃତ ପରାୟେ	ତୋ ପାଣି ପେଇ
ନଈ ରେ ନଈ ।

କେତେ ବଣ କେତେ	ପାହାଡ଼ କାଟି
ସୁନା କରୁଅଛୁ	କୂଳରେ ମାଟି ।
କି ଯାଦୁ ରହିଛି	ସୁଏ ତୋ' କହ
ବୁଡ଼ିଲେ ତହିଁ
ମନର ରୋଗ ମୋ	ଦେହର ରୋଗ
ଉଡ଼ାଏ କାହିଁ
ନଈ ରେ ନଈ ।

ନୂଆ ମେଘ ଯେବେ	ଆକାଶୁଁ ଝରେ
ତୋ ସପନ ଭାଙ୍ଗେ	ପାହାଡ଼ ଘରେ
କୁଳୁ କୁଳୁ କୁନି	ଛୁଆଟି ପରି
ଆସୁ ତ ଧାଇଁ
ଏଇ ମାଟି ସେବା	କରିବା ପାଇଁ
ନଈ ରେ ନଈ ।
ଅଳସୁଆ ଧରି	ତୋହରି ଜଳ
ଅଚଳନ୍ତି ହୋଇ	ହରାଏ ବଳ ।
ସବୁରି ତୃଷ୍ଣୁ ସେ	ଶୁଣଇ ଛି ଛି -
ଗୁଣକୁ ବାଛି
ନିଜେ ଚାଲିଥିଲେ	ସଲଖ ବାଟେ
ପଦେକେ କାହାରେ	ବାଛଇ ନାହିଁ
ନଈ ରେ ନଈ ।

ତୋର ତୀରେ କହେ	ମୋ ଶେଯେ ଶୁଅ
ସରସ ଦିଶିବ	ନୀରସ ମୁହଁ ।

ମୋ ମାଟି-ତିଳକ କପାଳେ
କରି ଚନ୍ଦନ ।

ତୋ ଜୀବନ ଗଢ଼ା ସକଳ ଖୁସି
କରିବା ପାଇଁ
ନଈ ରେ ନଈ ।

ଯେତେଦିନ ଥିବି ତୋ ପାଶେ ମୁହିଁ
ପବିତ୍ର ହେବି ମୁଁ ତୋ ଦେହ ଛୁଇଁ ।
ନିଇତି ସକାଳେ ନୀରବ ତଟେ
ଆସିବି ଧାଇଁ
ସିନାନ ପାଇଁ ।

ଦିହଟି ମନଟି ରହିଲେ ଖୁସି
ସରଗ ଭୋଗିବି ଏଇଠି ଥାଇଁ ମୁଁ
ଏଇଠି ରହି
ନଈ ରେ ନଈ ।



# ପାଣି ଫୁଟୁକା

ପାଣି ଫୁଟୁକାରେ ପାଣି ଫୁଟୁକା
ପାଣିରେ ତୋର ଘର
ଟିକିଏ ମରୁ . ଟିକିଏ ଜୀଉ
ଜୀବନ ତଟେ ଜର ।

ଜନମ ସାଥେ ମରଣ ଲୀଳା
ବୁଝେଇ ଦେଉ ଭଲ
ପଲକେ ଆଖି ଦେଉ ରେ ମୁଦି
ଅନାଇ ବଲ ବଲ ।

ବକଟେ ପ୍ରାଣ ହେଲେ କି ହେଲା
ମୁକତି ସଦା ଲୋଡୁ
ଜନମ ସାଙ୍ଗେ ମରଣ ତୁହି
ସହଜେ ଯେଣୁ ଯୋଡୁ ।

ପାଣି ଫୁଟୁକାରେ ପାଣି ଫୁଟୁକା
ପାଣିରେ ତୋର ଘର
ଖରା ତାତିରେ ସେ ପାଣିରେ ତୁ
କରୁ ଯେ ସାତ ପର ।

ବଜର ଯେବେ ଆକାଶେ ଡାକେ
ଥରଇ ତୋର ଦିହ
ବରଷା ଟୋପା ପଡ଼ି ତୋ ଫମ୍ପା
ଫୋଲାରୁ ଛାଡ଼େ ଜୀଅ ।

ପାଣି ଫୁଟୁକା ନୋହୁ ରେ ତୁହି
ଆମରି ପ୍ରାଣ ସତ୍ତା
ଆଖି ପିଛାକେ ମିଳେଇ ଯାଏ
ନ ମିଳେ ଟିକେ ପତ୍ତା ।

ପାଣି ଫୁଟୁକା ଆମକୁ କହୁ
"ପ୍ରାଣ ଫୁଟୁକା ତୁମେ
ମୋଓ ଜନମ ପାଣିରେ ସିନା
ତୁମ ଜନମ ଭୂମେ ।"

ମହା କାଳର ମହା ସାଗରେ
ପ୍ରାଣ ଫୁଟୁକା ଆମେ
କେତେ ଲଢ଼େଇ ବୃଥା ବଢ଼େଇ
ନ କରୁ ଭଲା କାମେ ?

ଯେ ଯହିଁ ଅଛ ଚିର ଫୁଟନ୍ତ
ହେବାକୁ ଏବେ ଆସ
ମନର ମନେ ଅମର ହୁଅ
ଅନ୍ତରେ କରି ବାସ ।

□ □

# କାକର

କାକର ଭାଇ ରେ କାକର ଭାଇ
କେଉଁ ଗାଇଁରେ ତୋ ଘର
ବହଳ ଘାସର କଅଁଳ ଶେଯେ
ହସୁଥାଉ ଦର ଦର ।

ଗୁଲୁ ଗୁଲୁ କୁନି ଚେହେରାଟି ତୋ
ଦିଶେ କେଡ଼େ ଚକ ଚକ
ଶୀତ ମାଆ ପାଶେ ଅଜାଡ଼ି ଦେଉ
ସେନେହ ସରାଗତକ ।

ଟିକି ଜୀବନର ଆଇଷ ଟିକ
ଖରା ନିଏ ତୋର ଟାଣି
କେତେବେଳେ ଆସି କାହିଁ ତୁ ଯାଉ
କେହି ତ ନ ପାରେ ଜାଣି ।

ଚାହିଁଥାଏ କୁନି ଭଉଣୀ ପରି
ଫୁଲ ତୋ ଆସିବା ପାଳି
"ଅଇଲାଣି ହେଇ କାକର ଭାଇ"
କହି କହି ମାରେ ତାଳି ।

ତର ତର କିଆଁ କାକର ଭାଇ
ଆସି ଦିନ ପଛେ ପଛେ
ରାତିଟିଏ ପାଇଁ ଘର ତୁ କରୁ
ସରୁ ସରୁ ଘାସ ଗଛେ ।

କାହିଁକି ଜନମ ମରଣ ପୁଣି
କିଛି ବୁଝାଯାଏ ନାହିଁ

ଟିକି ଜୀବନର ଟିକିଏ ସେବା
ଆସୁ ତୁ କରିବା ପାଇଁ ।

ତୋ ଟୋପା ଭିତରେ ଗୋପନ ଝରେ
ବଞ୍ଚିବାର ବ୍ୟାକୁଳତା
ଘାସ କାନେ କାନେ ମଉନେ କହୁ
ଆଲୋକ ରାଇଜ କଥା ।

ସେ ପ୍ରେମ କାହାଣୀ କେବେ ବା ଉଚ୍ଚ
ଚେତନା ହାବୁଡ଼ି ପଡ଼େ
ସେହି ମିଠାରସ ସାନ୍ତ୍ୱନା ଢାଳେ
ଦୁଃଖର ଜୀବନ ଝଡ଼େ ।

ସମୟ ଶୃଙ୍ଖଳା ପାସୋର ଗଲେ
ପ୍ରକୃତି ବତାଏ ବାଟ
ଥରାଇ ପତର ଝରାଇ ଫୁଲ
କରି ଛଅ ଋତୁ ନାଟ ।

ପ୍ରଗତି ପଥେ ସେ ଆଗେଇ ନିଏ
ଅନ୍ଧକାରେ କରି ପଛ
କହେ ଟିକିଟୋପା ଦେଖୁଛ ମତେ
ଦେଖୁଛ ତ ଦୂବ ଗଛ ।

ଏତେଟିକେ ମୋର ଚେହେରା ଦେଖି
ଭାବୁଅଛ କିସ ପରା
ବିରାଟ ସ୍ୱରୂପ ଗରଭେ ମୋର
ସ୍ନେହ ଖାଲି ଦିଏ ଧରା ।

ତୁମ ପ୍ରେମ ବଳେ ହୃଦୟେ ତୁମ
ଉଭା ହେବେ ପ୍ରେମମୟ
ସାର ଏ ଜୀବନ ନ କରି ମାଟି
ପ୍ରେମେ କର ସବୁ ଜୟ ।"

□□

# ପବନ

ଆସ ଆସ କୁନିମୁନି
ଅଛ ଯେତେ ଭବନେ
ମନ ଖୋଲି ବୁଲିବା ଏ
ମନ ଚୋରା ପବନେ ।

ଦେହେ ଦେହେ ପରକାଶ
ହେବେ ଭଗବାନ ସେ
ମନ ଛାଡ଼ି ଦିନେ ଆମେ
ଯିବା ଅତି ମାନସେ ।

ଘର ବୋଲି ତୁମେ ଯାହାକୁ କୁହ ସେ
ଚଉକାନ୍ଥି-ଘେରା ଗାତ
ତାଆରି ଭିତରେ ମତେ ପାଇଯିବ
ହଲେଇ ଦେଲେଟି ହାତ ।

ଭୋକର ଜଞ୍ଜାଳ ଶୋଷର ତାଡ଼ନା
ଅନୁଭବି ଥିବ କାହିଁ
କ୍ଷଣେ ମୋ ଅଭାବ ଘଟିବ ବୋଲି ତ
ବିଶ୍ୱାସ ନ ଯିବ ଭାଇ ।

ପାଣିର ବଦଳେ କ୍ଷୀରେ ବଞ୍ଚିଯିବ
ଭାତ ନ ଖାଇଲେ ରୁଚି
ଆଉଟି ପାଉଟି ହୋଇଯିବ ସବୁ
କ୍ଷଣେ ନେଲେ ମୁହିଁ ଛୁଟି ।

ଦେହର ଯତନ ନେବାଲାଗି ମୁହିଁ
ସବୁ ତହୁଁ ଦରକାରୀ

ଦୂର୍ ଦୂର୍ କରି ଦୁଆରୁ ତଡ଼ିଲେ
ଝାଳେ ନାଳେ ହେବ ଘାରି ।

ଆକାଶରେ ମୁହିଁ ଆକାଶେ ପୂରିଛି
ମୋର ଥିତି ଚାରିପାଖେ
ମୋ ବାଟ ଯେ ମାରେ ସେହି ବୋକା ସଦା
ଓଷଧ ମୂଳିକା ଚାଖେ ।

ମୂଲ୍ୟ ବୁଝି ମୋର ମନ ଦେଲେ କାମେ
ହେବ ଧନୀ, ମାନୀ, ଜ୍ଞାନୀ
ବଡ଼ ଚତୁର ସେ ଚାଲେ ସାଙ୍ଗେ ସାଙ୍ଗେ
ଧରି ମୋର ପିନ୍ଧାକାନି ।

ନିଜ କାମେ ମୁହିଁ ଲାଗିଥାଏ ସଦା
ତିଳେ ନାହିଁ ମତେ ଡର
କାହା ଡାକ ହାକେ କାନ ମୁଁ ନ ପାତେ
ମୋ ବୋଝ ସବୁଠୁଁ ବଡ଼ ।

ମହାକାଶ ଠହୁଁ ଏ ଟିକି ପୃଥିବୀ
ଗରଭେ ମୋ ଅଛି ବୁଡ଼ି
ସବୁ ଭୁଲିହୁଏ ମୋ ନାଆଁ ତ କିଏ
ମନୁ ନ ପାରଇ ଛୁଡ଼ି ।

ଜଗତ ଜୀବନେ ପ୍ରକୃତିର ମୁହିଁ
ଅଦେଖା ସେନେହାଶିଷ
ନିଃଶ୍ୱାସେ ନିଃଶ୍ୱାସେ ଭିତରେ ପ୍ରବେଶି
ପ୍ରଶ୍ୱାସେ କାଢ଼ଇ ବିଷ ।

ଗଛ ପଶୁ ପକ୍ଷୀ ମଣିଷ ରାଇଜ
ସବୁରି ଗୁହାରି ବୁଝେ
ସବୁରି ହୃଦଯେ ସମ ପରିମାଣେ
ସେନେହ ବାଣ୍ଟଇ ମୁଁ ଯେ ।

କରି ପକ୍ଷପାତ ମନେ କା ଆଘାତ
ନ ଦିଅ ନ ଦିଅ ଭାଇ
କୃପାମୟ ତାଙ୍କ କୃପାରୁ କି ଊଣା
କରନ୍ତି କାହାରି ପାଇଁ ।

ଅସଲ ଖୋରାକ ଦେହ ମନ ପ୍ରାଣେ
ମୁହିଁଟି ତୁମର ଜାଣ
ମୁଁ ଖୋଲା ପବନ ସବୁରି ଜୀବନ
ମୋ ନାଆଁ ଜଗତପ୍ରାଣ ।

ବେଶି ଲୋଡ଼ା ବୋଲି ବିଭୁ କୃପା ପ୍ରାୟ
ଚଉଦିଗେ ମୁହିଁ ପୂରି
ମେଲିଛି ଆନନ୍ଦ ରସର ପସରା
ନିରାଶେ ନ ହୁଅ ଝୁରି ।
ବାହାର ସମାନ ଭିତରେ ଘର ମୋ
ନିଗୂଢ଼ ଅନ୍ତର ସ୍ଥଳେ
ବଢ଼ଇ ସ୍ଥିରତା ଶାନ୍ତି ପବିତ୍ରତା
ସାଧନାର କଉଶଳେ ।



## ଝଡ଼-ବତାସୀ

ଝଡ଼ ରାକ୍ଷସ କମ୍ପିଲେ କୋପେ
ଖର ନିଶ୍ୱାସ ବହେ
ଆକାଶ ଛାତି ପୃଥିବୀ ଛାତି
ହୁଲୁକି ଉଠେ ଭୟେ ।

ବଜ୍ରର କଣ୍ଠେ ଧମକ ଦେଇ
କହଇ ଧୀଟ ଝଡ଼

"ସବୁରି ପରେ ମାଲିକ ମୁହିଁ
ମୋଠୁଁ କେ ନାହିଁ ବଡ଼ ।

ଆକାଶ ମୋର ଗୋଟିଏ ବିଧା
ପାରିବ ନାହିଁ ସହି
ମୋ ରାଗ ଶାନ୍ତ କରିବା ଲାଗି
ଜୁହାର ହେବ ମହୀ ।
ଯୁଦ୍ଧରେ ମତେ ଯିବାକୁ ଜିଣି
ନାହିଁ କେ ତିନି ପୁରେ
ପାରିଲେ କେହି ପାଖକୁ ଆସ
ନୋହିଲେ ରୁହ ଦୂରେ ।'

ଶପଥ ସିନା ରହିଲା ଖାଲି
ଝଡ଼ର ଜିଭ ତଳେ
ସୁନେଲି ଖରା ଚହଲି ଗଲା
ଆକାଶେ ଜଳେ ସ୍ଥଳେ ।

ବିଜୁଳି ନିଦେ ପଡ଼ିଲା ଶୋଇ
ମନରୁ ପୋଛି ଦକା
ଅଣ-ନିଃଶ୍ୱାସୀ ପାହାଡ଼ ବଣ
ମାଇଲେ ଶୋଇ ଥକ୍କା ।

ଜଗତ ପିତା ନିଦରୁ ଉଠି
ଚାହିଁଲେ ଆଖି ମଳି
ଥମିଲା ବାଆ କମିଲା ମେଘ
ନିଆଁରେ ପାଣି ଭଳି ।

ନିଃଶ୍ୱାସ ରୂପେ ନାସାରେ ସଦା
ବହଇ ଯା'ଙ୍କ ଝଡ଼
ଅରୂପ ସେହି ପୁରୁଷ ଏକା
ସବୁରି ପରେ ବଡ଼ ।

ସେବକ ମାଟି ପବନ ପାଣି
ଆକାଶ ଖରା ତାଙ୍କ

ତିଆରି ଛନ୍ତି କରିବା ପାଇଁ
ସୃଷ୍ଟିର ବୋଲହାକ ।

ଝଡ଼ ମୁଁ ମହା ଝଡ଼
ମୋ ଦାଉ ଯିଏ ଖୁସିରେ ସହେ
ସେ ଜିଣେ ସବୁ ଗଡ଼ ।

❑ ❑

## ପବନ-ଆହାର

ଖାଆରେ ପୁରି ଖାଆରେ କ୍ଷୀରୀ
ଖାଆରେ ପିଠା ପଣା
ପିଇଲେ ପାଣି ଦୁଧ ବା ଦହି
ପଡ଼ଇ ଜିଭେ ଜଣା ।

ଅସଲ ଆମ ଆହାର ଯିଏ
ନ ପାରୁ ଟିକେ ବୁଝି
ନାକରେ ସଦା ଖାଉଁ ତା' ଆମେ
ଓଠରେ ପାଟି ବୁଜି ।

ଖାଆଣି ସବୁ ରହିଚି ଯେତେ
ସେ ଏକା ସାତ ସାର
ଦିହେ ସେ ବଳ ଭରିବା ପାଇଁ
ଶକତି ଭାରି ତା'ର ।

ଦାଲଦା ପରି ଭେଜାଲ ଯେବେ
ମିଶଇ ଗୁଆ ଘିୟେ
ସୁଆଦ ତା'ର ଗାଧୋଇ ଯାଉ
ଉପୁଜେ ରୋଗ ଦିହେ ।

"ଶରୀର ବ୍ୟାଧି ମନ୍ଦିର" ନୁହେଁ
"ଆତ୍ମା" ଦେଉଳ ଏ
ସଫା ସୁତୁରା ରଖିବା ଲାଗି
ସକଳ ପୋଥି କହେ ।

ଶକତି ଘେନି ବଞ୍ଚିବା ପାଇଁ
ଚାହେଁଟି ଯେବେ ମନ
ସକାଳ ସଞ୍ଜେ ପବନ ସେବ
ସରିବ ନାହିଁ ଧନ ।

ଦୂଷିତ ବାତେ ଜୁହାର କଲେ
ହତାରେ କୋଶୁଁ ଥାଇ
ସକଳ ରୋଗେ ଓଷଧ ପରି
କରିବ ଜୟ ଭାଇ ।

ଯେ ନିରିମଳ ପବନ ସେବେ
ବିଭୁ ପ୍ରସାଦ ପାଏ
ସେ ପରସାଦେ ଶରୀର ତା'ର
ଅମର ହୋଇଯାଏ ।

□ □

## ଝାଞ୍ଜି ପବନ

ଝାଞ୍ଜି ପବନ ଝାଞ୍ଜ ବଜାଏ
ଖଣ୍ଡିଆ ଭୂତ ନାଚେ
ଗୀରିଷମର ସୂରଜ ମୁହଁ
ଅଗିନି ପରି ପାଚେ ।

ମଉନ ମାଟି    ନିଉନ ହୋଇ
ଆଶିଷ ମୋର ମାଗେ
ଲଢ଼େଇ କରେ    ବୀର ପରି ମୁଁ
ନିରାଟ ଖରା ସାଙ୍ଗେ ।

ଝାଞ୍ଜି ପବନ    ବହିଲେ ବନ
ବାହୁନେ ସାଆଁ ସାଆଁ
ନଈ ଛାତିରୁ    ରକତ ଶୁଖେ
ପୋଖରୀ କରେ ଆଆଁ ।

ବାଲିକୁ ହୁଏ    ଘୋଗୋଡ଼ ଜର
ଧୂଳିର ପ୍ରାଣ ଛାଡ଼େ
ଖାଆଁ ଖାଁ କିଏ    ଗୋଡ଼ାଏ ଖାଲି
ବିଲର ଚାରିଆଡ଼େ ।

ରହଇ ଝାଞ୍ଜି    ପାଗଳ ସାଜି
ମୋ ବାଟେ ମୁହିଁ ଧାଏଁ
କାମରେ ବୁଡ଼ି    ନ ଗଲେ କାମ
ନ ହୁଏ ନିଜ ଛାଏଁ ।

ମାତିଲେ ମୁହିଁ    ହୁଅନ୍ତି ମେଘ
ଆକାଶେ ସବୁ ଠୁଳ
ପାହାଡ଼ ବୁକେ    ମାରିଲେ ବିଧା
ଉବୁଳେ ନଈକୂଳ ।

ଝାଞ୍ଜି ବା ପାଜି    କୁହ ଯା' ମତେ
ଶାନ୍ତିର ଦୂତ ମୁହିଁ
ବରଷା ମହୁ    ଆକାଶୁଁ ଝରେ
ଦେଲେ ମୁଁ ମାଟି ଛୁଇଁ ।

ମୁଁ ହିତକାରୀ ବଇରୀ ସିନା
ଉପର ଖାଲି ତାତି
ସବୁରି ପାଇଁ ଶୀତଳ ଭାରି
ଭିତରେ ମୋର ଛାତି ।

❑ ❑

# ସୁଲୁସୁଲିଆ ବାଆ

ସୁଲୁସୁଲିଆ ବାଆ
କୁଲୁକୁଲିଆ ଗୀତିଟି ଗାଇ
ପାଖକୁ ମୋର ଆ ଆ ।
କାଲିଆ ଦେଇ ପତର ମେନୁ
ଗହଳ ବଣେ ବାଗୁଡ଼ି ଖେନୁ
ପରଶ ତୋର ଏସନ ରୂପ
କି ନୋହିଥିବ ଆହା ।

ସୁଲୁସୁଲିଆ ବାଆ ।
ବେଣୁଟି ତୋର ବଜେଇ ଦେଉ
ଡାକିଲେ କାଉ କାଆ ।
ପୂରୁବ ପଟେ ଫାଟକ ମେଲା
ଅବିର ମୁଣି କେ ବୁଣି ଦେଲା
ଭସେଇ ନେଲୁ ଖଣ୍ଡ କି ଖଣ୍ଡି
ମେଘର ସୁନା ନାଆ ।

ସୁଲୁସୁଲିଆ ବାଆ
ବାଇଆ ପରି ମନକୁ ମନ
ତୋ ଗୀତ ତୁହି ଗାଆ ।

କଅଁଳ ନିଦେ ଏଇଠି ଶୋଇ
ଛାତିର ଦୁଃଖ ଦେବି ମୁଁ ଧୋଇ
ଆସିବୁ ଟିକେ ମୋ ପାଖୁ ନିତି
ଯହିଁ ତୁ ବୁଲୁଥାଆ ।
ସୁଲୁସୁଲିଆ ବାଆ
ତାଳ ବାଉଁଗା ବିଚଣା ଖଣ୍ଡି
ହଲେଇ ଦେଇ ଯାଆ ।
ମଣିଷ ତହୁଁ ଘାସଟି ଯାଏ
ଆଦର କରି ଆପଣା ପ୍ରାଏ
ଆଉଁସି ଦେଉ ଦେହ ଓ ମୁଣ୍ଡ
ସତେ କି ନିଜ ମାଆ ।

ସୁଲୁସୁଲିଆ ବାଆ
କହ ତ ମତେ କିଏ ତୋ ବାପ
କିଏ ସେ ତୋର ମାଆ ।
ଶକତିମୟ କେ ତାଙ୍କ ପରି
ତୋ ପରି ପୁଅ ଜନମ କରି
ସେ ଦୁହେଁ ସତେ ଶେଷ ବୟସେ
ହେବେ କି ମତେ ସାହା
ଏତିକି ଟିକେ ତାଙ୍କରି ପାଖେ
ଜଣେଇ ଦେବୁ ଯାଆ ।

□ □

## ବାରମିଶା ପବନ

କହୁଚି ପବନ ସାଇଁ ସାଇଁ
ମୁଁ ଥାଉଁ ଥାଉଁ ଦୁଆରକୁ କିଳି
ବିଚିଣି ହଲାଅ କାହିଁପାଇଁ ।

ମୁଁ ବୁଲୁଚି ଭରା ନଈ ଚାରିପାଖେ
କପୋତ କପୋତୀ ତୀରେ ଯାଉ ଡାକେ
ଘନ ବନମାଳି ଧାନ୍ୟ ଶାଳ ତାଳ
ବହଳ ଅନ୍ଧାର ଗଛ ଛାଇ
ପବନ ବହୁଛି ସାଇଁ ସାଇଁ ।

କହୁଚି ପବନ ସିରି ସିରି
ଦିହ ଯେବେ ତୁମ ଲାଗୁଛି ଅଳସ
ଖୋଲା ପଡ଼ିଆରେ ବସ ଥିରି ।
ଉପରେ ଆକାଶ ତଳେ ନୀଳ ଘାସ
ଚନ୍ଦନ ରଖିଛି ବୋଳିଦେବି ଆସ
ମନ-ଭୋକ ତୁମ ପାଇବ ଖୋରାକ
ଆଉଁସି ଦେଲେ ମୁଁ ଥିରି ଥିରି
ପବନ ବହୁଚି ସିରି ସିରି ।

କହୁଚି ପବନ ସୁଉ ସୁଉ
ନିତି କାଶ ଜରେ ବିଛଣା ଧରୁଛ
ଥାଉଁ ଥାଉଁ ସଦା ପାଶେ ମୁଉଁ ।
ଖୋଲି ଘରମୁହାଁ ଝରକା କବାଟ
ମିଶିବାକୁ ମତେ ଦିଅ ଟିକେ ବାଟ
ସୁଖ ଦେଇ ତୁମ ଦୁଃଖ ହରି ନେବି
ଆଉ ନ କାଶିବ ଖୁଉଁ ଖୁଉଁ
ପବନ ବହୁଚି ସୁଉ ସୁଉ ।

କହୁଚି ପବନ ଥିରି ଥିରି
ଗୁମ୍ଫା ଘରେ ଧୂଆଁ ଜାଳି ଶୋଉଥିଲେ
ହସୁଥିବି ମୁହିଁ କିରି କିରି ।
ନ ପଚାର ପଛେ ତୁମେ ମତେ ଭାଇ
ବଳେ ବଳେ ମୁହିଁ ଆସୁଥିବି ଧାଇଁ
ତୁମ କଲବଲ ଟିକିଏ ଦେଖିଲେ
ଛାତି ସିନା ମୋର ହେବ ଚିରି
ପବନ ବହୁଚି ଥିରି ଥିରି !

କହୁଚି ପବନ ସୁଲୁ ସୁଲୁ
ଖାଉଚ ପିଉଚ ପେଟ ପାଟି ଭରି
ଦିଶୁନାହଁ କିଆଁ ଗୁଲୁ ଗୁଲୁ ।
ବଅସ ଯୁଆନ ମନ ବୁଢ଼ା କିଆଁ
ଦିହେ ବାରରୋଗ ମାଡୁଅଚି ଚିଆଁ
ଛାଡ଼ିଛ ମୋ ପରି ବାହାର ସାଥୀକୁ
ଭିତର ପଲଙ୍କେ ଝୁଲୁ ଝୁଲୁ
ପବନ ବହୁଚି ସୁଲୁ ସୁଲୁ ।

କହୁଚି ପବନ ସନ ସନ
ଏତେ ଖୁସିବାସି ଗହଳେ କାହିଁକି
ପିତା ଲାଗୁଅଛି ତୁମ ମନ ।
ମୋ ପାଖେ କେବଳ ଭରସାଟି ରଖ
ହଟିଯିବ ରୋଗ ତୁଟିଯିବ ଦକ
ସରଗର ସୁଖ ଭୋଗର ମଣିଷ
ଦେହଟିକୁ କଲେ ମୂଳଧନ
ପବନ ବହୁଚି ସନ ସନ ।



ଅନ୍ତିମ

## ଜୀବନ-ଝଡ଼

ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ
ଆହୁଲାଟି ଗଲେ ଭାସି
ମନେ ତ ଦକା ନ ଥାଏ ।

ଝଡ଼ ପରେ ସହି ଝଡ଼
ଛାତି ହୋଇଲାଣି ଦଢ଼
କୁଆରିଆ ସୁଏ ପଡ଼ି
ପାହାଡ଼େ ଯେ ଧକ୍କା ଖାଏ
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ଅନ୍ଧକାର ଶେଷ ନିଶି
ଅନ୍ଧକାର ଦଶ ଦିଶି
ଆଲୋକେ ଯିବାକୁ ମିଶି
ଅନ୍ଧାର ସେ ପଥେ ଧାଏଁ
ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ତୁହା ତୁହା ତୋଫାନରେ
ଛିଡ଼ା ସବୁ ପାଲ ଥରେ
ଅଥଳକୁ କାତ ଡରେ
ନ ସରେ ତ ପଥ ହାୟେ !

ଝଡ଼ର ତରଣୀ ମୁହିଁ
ଝଡ଼େ ମୋ ଜୀବନ ବାହେ ।

ଦରିଆରେ ଅଣଚାଶ
ଏ ଝଡ଼େ କେ ଯିବ ଆସ
ଧରି ଝଡ଼ର ସାହସ
କାଳଜୟୀ ବୀର ପ୍ରାୟେ
ଝଡ଼ର ତରଣୀ ମୁଁ ଗୋ
ଝଡ଼େ ମୋ ଜୀବନ ବାହେ ।

ଅନ୍ଧାର ମୁଁ—କେଡ଼େ ସାନ
ଦେଇ ପ୍ରଭୁ ଦିବ୍ୟ ଜ୍ଞାନ
ପ୍ରେମେ କର ବଳୀୟାନ
ମହାନନ୍ଦେ ଆଗେ ଧାଇଁ
ଆଲୋକ ପିଆସୀ ମୁହିଁ
ଆଲୋକ ଜୀବନ ଚାହେଁ
ଝଡ଼ର ତରଣୀ ମୁଁ ଗୋ
ଝଡ଼େ ମୋ ଜୀବନ ବାହେ ।





ସଚ୍ଚିଦାନନ୍ଦ ମହାନ୍ତି

ସମ୍ପ୍ରତି ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟରେ ଇଂରାଜୀ ବିଭାଗ ପ୍ରଫେସର ରୂପେ କାର୍ଯ୍ୟରତ । ସେ ଥିଲେ ଇଂଲଣ୍ଡର ବ୍ରିଟିଶ କାଉନସିଲ ସ୍କଲାର (୧୯୯୦), ଟେକ୍ସାସ ଓ ୟେଲ (୧୯୯୦-୯୧) ରେ ପୋଷ୍ଟ-ଡକ୍ଟରାଲ ଫେଲୋ ଏବଂ ସାଲ୍ଜବର୍ଗ ଫେଲୋ, ଅଷ୍ଟ୍ରିଆ (୧୯୯୬) । ଅନନ୍ୟ ଅନୁବାଦ ଲାଗି ପ୍ରଫେସର ମହାନ୍ତି ରାଷ୍ଟ୍ରପତିଙ୍କ ଠାରୁ କଥା ପୁରସ୍କାର, କଥା ବ୍ରିଟିଶ କାଉନସିଲ ଅନୁବାଦ ପୁରସ୍କାର (୧୯୯୪) ଓ ବିଶ୍ୱବିଦ୍ୟାଳୟ ମଞ୍ଜୁରି କମିଶନଙ୍କ 'କ୍ୟାରିୟର ଆୱାର୍ଡ' (୧୯୯୪-୯୭) ପାଇଛନ୍ତି । ସେ ହାଇଦ୍ରାବାଦର ଆମେରିକାନ ଷ୍ଟଡିଜ ରିସର୍ଚ୍ଚ ସେଣ୍ଟରର ବରିଷ୍ଠ ଏକାଡେମିକ ଫେଲୋ (୧୯୯୯) ଓ ସାମ୍ପ୍ରତିକ କାଳର ବ୍ରିଟିଶ ଲେଖକମାନଙ୍କ ଉପରେ କେମ୍ବ୍ରିଜ ସେମିନାରର ଫେଲୋ (୧୯୯୯) ।

ତାଙ୍କର କୃତି ରୂପେ ଡି.ଏଚ. ଲରେନ୍ସଙ୍କ ଉପରେ ଦୁଇଟି ପୁସ୍ତକ ସମେତ ତାଙ୍କ ଦ୍ୱାରା ସଂପାଦିତ ଅନ୍ୟ ତିନୋଟି ପୁସ୍ତକ ରହିଛି, ଯେଉଁଥିରୁ ଗୋଟିଏ ହେଉଛି, ଇଣ୍ଡିଆ ଫୁଲ୍ ବ୍ରାଇଟ୍ କମିଶନଙ୍କ ଲାଗି ସାଂସ୍କୃତିକ ବିନିମୟ ଉପରେ ଆଧାରିତ; ଏହାର ମୁଖବନ୍ଧ ଲେଖିଛନ୍ତି ଜେ.କେ. ଗାଲ୍‌ବ୍ରେଥ୍ । ତାଙ୍କର ଲେଖାସବୁ ଇଣ୍ଡିଆ ଟୁଡେ, ହିନ୍ଦୁ, ଇଣ୍ଡିଆନ ଏକ୍ସପ୍ରେସ, ସ୍ୱାନ ମାଗାଜିନ, ଇଣ୍ଡିଆ ଇଣ୍ଟରନ୍ୟାସନାଲ ସେଣ୍ଟର କ୍ୱାଟର୍ଲି, ପି.ଇ.ଏନ., ଇଣ୍ଡିଆ ଓ ନ୍ୟୁ କ୍ୱେଷ୍ଟ ସମେତ ବିଭିନ୍ନ ଅଗ୍ରଗଣ୍ୟ ପତ୍ରିକାରେ ପ୍ରକାଶିତ ।

'କବି ବିଦ୍ୟୁତ୍‌ପ୍ରଭାଙ୍କ ଶ୍ରେଷ୍ଠ କବିତା' ପୁସ୍ତକଟି ଲେଖିକାଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ ଦ୍ୱାରା ସଂପାଦିତ ।

ISBN 81-7401-384-9






ଫ୍ରେଣ୍ଡସ୍ ପବ୍ଲିଶର୍ସ